ପ୍ରଥମ ପ୍ରକାଶ ଜୁନ୍ ୧୯୭୭
ଦ୍ୱିତୀୟ ମୁଦ୍ରଣ ଅକ୍ଟୋବର ୧୯୮୫
ତୃତୀୟ ମୁଦ୍ରଣ ମଇ ୧୯୯୦
ଚତୁର୍ଥ ମୁଦ୍ରଣ ଜୁଲାଇ ୧୯୯୯

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜକ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ମୁଦ୍ରଣ
ଶ୍ୟାମ ପ୍ରିଣ୍ଟର୍ସ, କଟକ

ମୂଲ୍ୟ ଟ ୨୦.୦୦

# ସୂଚୀପତ୍ର





# ଉପକ୍ରମଣିକା

ଆଧୁନିକ ବିଜ୍ଞାନର ସୃଷ୍ଟି ମାତ୍ର ତିନିଶହ, ଚାରିଶହ ବର୍ଷ ଭିତରେ ବୋଲି ଧରାଯାଉଥିଲେହେଁ ମିଶର, ଗ୍ରୀସ୍, ଭାରତ ଆଦି ଦେଶରେ ଖ୍ରୀଷ୍ଟ ଜନ୍ମହେବାର ବହୁବର୍ଷ ପୂର୍ବରୁ ବିଜ୍ଞାନର 'ଆଦିପର୍ବ' ପୁସ୍ତକରେ ସେହି ଖ୍ରୀଷ୍ଟପୂର୍ବ ଯୁଗର ବିଜ୍ଞାନ କଥା ବର୍ଣ୍ଣନା କରାଯାଇଛି । ଆମେ ବହୁତ ଦିନ ଧରି ଭାବି ଆସିଥିଲୁ, ଆଦିବିଜ୍ଞାନର ଆରମ୍ଭ ଗ୍ରୀସ୍ କିମ୍ବା ଭାରତବର୍ଷରୁ । କିନ୍ତୁ ଏବେ କେତେଗୋଟି ଆବିଷ୍କାରରୁ ଜଣାଯାଇଛି, ଯାହା ଫଳରେ ଆମେ ସେହି ପୁରାତନ ଧାରଣାକୁ ବଦଳାଇବାକୁ ବାଧ ହେଉଛୁ । ବହୁ ବିଶେଷଜ୍ଞଙ୍କ ମତରେ ପୃଥିବୀର ଆଦି ବୈଜ୍ଞାନିକ ହେଉଛନ୍ତି ମିଶରର ଇମ୍‌ହୋଟେପ୍ । ସେ ଆଜକୁ ପ୍ରାୟ ୫୦୦୦ ବର୍ଷ ତଳେ ମିଶରରେ ଏକ ବିଶିଷ୍ଟ ବୈଜ୍ଞାନିକ ଭାବରେ ଖ୍ୟାତି ଲଭିଥିଲେ । ସେ ଏକାଧାରରେ ଥିଲେ ଜଣେ ବଡ ଜ୍ୟୋତିର୍ବିଜ୍ଞାନୀ, ଚିକିତ୍ସକ ଓ ଇନ୍‌ଜିନିୟର । ପିରାମିଡ୍‌କୁ କେମିତି ତିଆରି କରିବାକୁ ହୁଏ, ସେ ତାହାର କୌଶଳ ଉଦ୍ଭାବନ କରିଥିଲେ ।

ଇମ୍‌ହୋଟେପ୍ ମିଶରରେ ଯେଉଁ ସମୟରେ ପ୍ରସିଦ୍ଧି ଅର୍ଜନ କରିଥିଲେ, ସେ ସମୟରେ ଭାରତବର୍ଷରେ ତ୍ରେତା କିମ୍ବା ଦ୍ୱାପର ଯୁଗର ରାଜତ୍ୱ ଚାଲିଥିବାର ସମ୍ଭାବନା । କେତେକଙ୍କ ମତରେ ମହାଭାରତ ଯୁଦ୍ଧ, କୃଷ୍ଣ, ପାଣ୍ଡବ, କୌରବମାନେ ଏହାର ପରକାଳର ବା ସମସାମୟିକ ।

ଆଶାକରେ ଏହି ପୁସ୍ତକଟି ଆମ ପାଠକ-ପାଠିକା ମହଲରେ ବିଶେଷ ଭାବରେ ଆଦୃତ ହେବ । ପୁରାକାଳରେ ବିଜ୍ଞାନ କେତେଦୂର ଆଗେଇଥିଲା ବିଶେଷତଃ ଖ୍ରୀଷ୍ଟ ଜନ୍ମ ହେବାର ପୂର୍ବରୁ, ତାହା ଏହି ପୁସ୍ତକଟି ଜଣାଇଦେଇ ପାରିବ ।

ଦୋଳମୁଣ୍ଡାଇ, କଟକ — ବିନୀତ

ତା ୮।୮।୧୯୭୭ — **ଗୋକୁଳାନନ୍ଦ ମହାପାତ୍ର**

## ପ୍ରଥମ ଅଧ୍ୟାୟ

# ଆଦି ବିଜ୍ଞାନ ଓ ବୈଜ୍ଞାନିକ

ଆଜକୁ ବହୁବର୍ଷ ତଳର କଥା । ସେତେବେଳକୁ ଯୀଶୁଖ୍ରୀଷ୍ଟ ଜନ୍ମ ହୋଇ ନ ଥାନ୍ତି । ଆମ ଭାରତବର୍ଷରେ ସେତେବେଳ ପର୍ଯ୍ୟନ୍ତ ବୌଦ୍ଧ ଯୁଗ ଆରମ୍ଭ ହୋଇ ନ ଥାଏ । ଭାରତବର୍ଷରେ ଚାଲିଥାଏ ବୌଦ୍ଧଯୁଗର ପୂର୍ବବର୍ତ୍ତୀ ଯୁଗ ବୈଦିକ ଯୁଗ । କିଛିଦିନ ପୂର୍ବରୁ ମହାଭାରତ ଯୁଦ୍ଧ ସରିଥାଏ । ହିନ୍ଦୁଧର୍ମର ପ୍ରଧାନ ପୂଜ୍ୟ କୃଷ୍ଣଙ୍କର ଦେହାନ୍ତ ହୋଇଯାଇଥାଏ । କୃଷ୍ଣଙ୍କ ଦେହାନ୍ତଠାରୁ ବର୍ତ୍ତମାନର କଳିଯୁଗ ଆରମ୍ଭ ହୋଇଯାଇଥାଏ । ଐତିହାସିକମାନେ କହନ୍ତି ସେ ଯୁଗରେ ପୃଥିବୀର ଚାରିଆଡ଼େ ଅସଭ୍ୟତାର ଘନ ଅନ୍ଧକାର ଘୋଟି ରହିଥିଲାବେଳେ, ଆମ ଭାରତବର୍ଷ, ଚୀନ, ବେବିଲୋନ, ମେସୋପଟେମିଆ, ମିଶର, ଗ୍ରୀସ୍ ଆଦି କେତୋଟି ରାଜ୍ୟରେ ସଭ୍ୟତାର ଅରୁଣାଲୋକ ଯାହା କିଛି ଦେଖାଦେଇଥିଲା । ସେ ଯୁଗରେ ସଭ୍ୟଦେଶ ଓ ସଭ୍ୟ ଅଧିବାସୀ ବୋଇଲେ ଏଇ କେତୋଟି ଦେଶ ଓ ସେମାନଙ୍କର ଅଧିବାସୀଙ୍କୁ ବୁଝାଉଥିଲା । ଆଧୁନିକ ସଭ୍ୟଦେଶ ଇଉରୋପ, ଆମେରିକା ଆଦି ଅସଭ୍ୟତାର ଘନ ତିମିରରେ ସଢୁଥିଲେ । ଐତିହାସିକମାନେ ଆହୁରି କହନ୍ତି ଯେ ଏହି ଦେଶଗୁଡ଼ିକ ସଭ୍ୟଥିବାରୁ କଳା, ସାହିତ୍ୟ, ବିଜ୍ଞାନ, ଗଣିତ, ସ୍ଥାପତ୍ୟ ଆଦିରେ ଯଥେଷ୍ଟ ଆଗେଇ ଯାଇଥିଲେ । ସେ ଯୁଗରେ ଚୀନ୍, ଗ୍ରୀସ୍, ମିଶର, ଆମ ଦେଶ ଭାରତବର୍ଷରେ ବଡ଼ ବଡ଼ ବୈଜ୍ଞାନିକମାନେ ଜନ୍ମଗ୍ରହଣ କରି ସେମାନଙ୍କ ବୈଜ୍ଞାନିକ

ପ୍ରତିଭାବଳରେ ମାନବିକ ସଭ୍ୟତାକୁ ଯଥେଷ୍ଟ ଆଗେଇ ନେଇ ପାରିଥିଲେ । ଏତେ ଆଦିମ ଯୁଗରେ ଜନ୍ମଗ୍ରହଣ କରି ମଧ୍ୟ ସେମାନେ ଯେଉଁସବୁ ଆବିଷ୍କାର ଓ ଉଦ୍ଭାବନ ଆଦି କରିଥିଲେ, ତାହାର ପ୍ରଭାବ ହଜାର ହଜାର ବର୍ଷ ବିତିଯାଇଥିଲେ ମଧ୍ୟ ଆଜି ପର୍ଯ୍ୟନ୍ତ ତିଷ୍ଠି ରହିପାରିଛି । ସେ ଯୁଗର ବହୁ ତଥ୍ୟ ଓ ବୈଜ୍ଞାନିକ ଉଦ୍ଭାବନ ଏବେ ବି ଆଧୁନିକ ବିଜ୍ଞାନରେ ପ୍ରଭାବ ବିସ୍ତାର କରିପାରିଛି । ସେହିସବୁ ବୈଜ୍ଞାନିକମାନଙ୍କ ମଧ୍ୟରୁ କେତେକଙ୍କ ଆବିଷ୍କାର ଓ ଉଦ୍ଭାବନ କାଳର ଅତଳ ସ୍ମୃତିରେ ଲୀନ ହୋଇଗଲାଣି । ବହୁ ବୈଜ୍ଞାନିକଙ୍କ ନାମ ଓ ଗବେଷଣା ପୃଥିବୀ ପୃଷ୍ଠରୁ ବିସ୍ମୃତ ହୋଇଗଲାଣି । ଯେଉଁ କେତେକ ଆଦି ବୈଜ୍ଞାନିକଙ୍କ ନାମ ଏବେ ବି ବିଜ୍ଞାନଜଗତରେ ଶୁଣାଯାଏ, ସେମାନଙ୍କ ମଧ୍ୟରେ ପ୍ରସିଦ୍ଧତମ ହେଉଛନ୍ତି ଗ୍ରୀସ୍ ଦେଶର ବୈଜ୍ଞାନିକ ଥେଲସ୍, ପିଥାଗୋରାସ୍, ଡିମୋକ୍ରିଟସ୍, ପ୍ଲେଟୋ, ଆରିଷ୍ଟଟଲ୍, ଇଉକ୍ଲିଡ, ଆର୍କିମିଡିସ୍, ହିପୋକ୍ରିଟ୍ସ ଆଦି ବୈଜ୍ଞାନିକମାନେ । ଏମାନେ ସମସ୍ତେ ଯୀଶୁଖ୍ରୀଷ୍ଟ ଜନ୍ମ ହେବାର ବହୁପୂର୍ବରୁ ବିଜ୍ଞାନଜଗତରେ ପ୍ରତିଷ୍ଠା ଅର୍ଜନ କରିପାରିଥିଲେ । ଆଧୁନିକ ଇତିହାସବିତ୍‌ମାନେ ସେହିମାନଙ୍କୁ ଆଦିବୈଜ୍ଞାନିକର ଆଖ୍ୟା ଦେଇଛନ୍ତି । ବଡ଼ ଦୁଃଖର ବିଷୟ ଠିକ୍ ସେହି ସମୟରେ ବା ତହିଁର କିଛି ବର୍ଷ ପୂର୍ବରୁ ଭାରତରେ ଚରକ, ଶୁଶ୍ରୁତ, ଜୀବକ, ଆତ୍ରେ ଆଦି ବୈଜ୍ଞାନିକମାନେ ପ୍ରତିଷ୍ଠା ଅର୍ଜନ କରିଥିଲେ ହେଁ ସେମାନଙ୍କ ଜନ୍ମକାଳ ସମ୍ପର୍କରେ ଠିକ୍ ବିବରଣୀ ସେମାନଙ୍କ ହସ୍ତଗତ ହୋଇ ନ ଥିବାରୁ ସେମାନଙ୍କୁ ଆଦି ବୈଜ୍ଞାନିକର ଗୌରବ ଦେବାକୁ ସେମାନେ ପ୍ରସ୍ତୁତ ନୁହଁନ୍ତି ।

ଆମେ ବେଳେବେଳେ ଆତ୍ମଗରିମା ପାଇଁ କହୁ ଭାରତବର୍ଷର ଅତୀତ ଯୁଗରେ ବିଜ୍ଞାନର ପ୍ରସାର ଖୁବ୍ ଅତ୍ୟଧିକ ଥିଲା । ଆମ

ଦେଶର ତତ୍‌କାଳୀନ ବିଜ୍ଞାନବିତ୍‌ମାନେ ବିଜ୍ଞାନର ବହୁ ଶାଖାରେ ବେଶ୍ ପାରଦର୍ଶିତା ଲାଭ କରିଥିଲେ । ଏହା କେବଳ ଆତ୍ମସନ୍ତୋଷ ମାତ୍ର । ଆମର ପୁରାତନ ଇତିହାସରୁ ଯାହା ଜଣାପଡ଼େ ଅତୀତ ଭାରତରେ ବିଜ୍ଞାନର ପ୍ରସାର ସେମିତି କିଛି ଆଖିଦୃଶିଆ ନ ଥିଲା । ଗଣିତ, ବୀଜଗଣିତ, ଜ୍ୟୋତିର୍ବିଜ୍ଞାନ, ସ୍ଥାପତ୍ୟ, ଚିକିତ୍ସାଶାସ୍ତ୍ର ଆଦିରେ ଆମ ବୈଜ୍ଞାନିକମାନେ ଆଖିଦୃଶିଆ ଆବିଷ୍କାର କରିଥିଲେହେଁ ରସାୟନବିଜ୍ଞାନ, ପଦାର୍ଥବିଜ୍ଞାନ, ଜୀବବିଜ୍ଞାନ ଆଦିରେ ସେମାନଙ୍କର ସେମିତି କିଛି ଅବଦାନ ନ ଥିଲା । ଖ୍ରୀଷ୍ଟ ଜନ୍ମ ହେବାର ବହୁବର୍ଷ ପରେ ରସାୟନ ବିଜ୍ଞାନ, ଇଞ୍ଜିନିୟରିଙ୍ଗ୍ ବିଜ୍ଞାନରେ ଯାହା କିଛି ଗବେଷଣା ଦେଖାଦେଇଥିଲା । ଆମ ପୁରାଣରେ, ପୁଷ୍ପକ ବିମାନ ଆଦି ସମ୍ବନ୍ଧରେ ଆମେ ଯାହା ପଢୁ, ତାହା କେବଳ କଳ୍ପନା-ସମ୍ଭୂତ । ଆମର ଆକାଶଯାନ କେବେ ଏତେ ଉପରକୁ ଯାଇ ନ ଥିଲା । ମହାଭାରତ ଯୁଦ୍ଧରେ ଆମେ ବହୁପ୍ରକାର ବାଣ ବିଷୟରେ ପଢୁ, ସେଥିରୁ ଗୁଡ଼ିଏ କଳ୍ପନା ସମ୍ଭୂତ, ପୁରାଣକାରଙ୍କ କଳ୍ପନାଚାତୁରୀର ପରାକାଷ୍ଠା ଦେଖାଏ । ପ୍ରକୃତ ଅବସ୍ଥା ତା' ଠାରୁ ଢେର ଦୂରରେ ।

କୃଷ୍ଣଙ୍କର ଯେଉଁ ସଂହାରକାରୀ ସୁଦର୍ଶନ ଚକ୍ର ଥିଲା, ତାହା ଏକପ୍ରକାର ଘୂର୍ଣ୍ଣାୟମାନ କ୍ଷେପଣାସ୍ତ୍ର । ଏହି କ୍ଷେପଣାସ୍ତ୍ରର ବିଶେଷତ୍ୱ ଯେ ଏହା ହାତରୁ ଯାଇ ପୁଣି ହାତକୁ ଫେରିଆସେ । ଏହି ଘୂର୍ଣ୍ଣାୟମାନ କ୍ଷେପଣାସ୍ତ୍ର ପ୍ରୟୋଗରେ କୃଷ୍ଣ ବେଶ୍ ସିଦ୍ଧହସ୍ତ ଥିଲେ । ଏହି କ୍ଷେପଣାସ୍ତ୍ର ଏତେ ତୀକ୍ଷ୍ଣ ଯେ ସେ ଏହାକୁ ଚଳାଇ ଶତ୍ରୁକୁ ନିପାତ କରିପାରୁଥିଲେ ।

କେତେକ ଇତିହାସବିତ୍‌ଙ୍କ ମତରେ ସେ ଯୁଗରେ ଗ୍ରୀସ୍ ଦେଶର ବୈଜ୍ଞାନିକମାନେ ବୈଜ୍ଞାନିକ ଗବେଷଣାରେ ଯେଉଁ ପରାକାଷ୍ଠା

ଦେଖାଇଥିଲେ, ତା ଭାରତଠାରୁ ଢେର ଉଚ୍ଚରେ । ଗ୍ରୀକ୍ ବୈଜ୍ଞାନିକଙ୍କର ଗଣିତ, ଜ୍ୟାମିତି, ଜ୍ୟୋତିର୍ବିଜ୍ଞାନ, ଚିକିତ୍ସା-ଶାସ୍ତ୍ର ବ୍ୟତୀତ ରସାୟନ ବିଜ୍ଞାନ, ପଦାର୍ଥ ବିଜ୍ଞାନ, ଜୀବ ବିଜ୍ଞାନ ଆଦି ଶାଖାରେ ବେଶ୍ ବ୍ୟୁତ୍ପତ୍ତି ଥିବାର ପ୍ରମାଣ ମିଳେ । ତାହାଛଡ଼ା ଆମର ଇତିହାସ ଲେଖାପଦ୍ଧତି ଯଥେଷ୍ଟ ଉନ୍ନତ ନ ଥିବାରୁ ଆମ ଦେଶରେ ଯାହା ବି କିଛି ଥିଲା, ତାହା ବିଶ୍ୱ ଦରବାରରେ ଉପସ୍ଥାପିତ ତଥା ଆଦୃତ ହୋଇପାରୁ ନ ଥିଲା । ଆମର ବହୁ ବୈଜ୍ଞାନିକ ଆବିଷ୍କାର ଓ ଉଦ୍ଭାବନ ନାନାପ୍ରକାର କାଳ୍ପନିକ କିମ୍ବଦନ୍ତୀ ସହିତ ଯୋଡ଼ି ହୋଇଯାଇଥିବାରୁ ତାହାର ଗୁରୁତ୍ୱ ବିଶ୍ୱଦରବାରରେ ଏବେ ବି ପ୍ରତିଷ୍ଠା ପାଇପାରୁ ନାହିଁ ।

ଏହିସବୁ ଦୃଷ୍ଟିରୁ ଆଧୁନିକ ବିଜ୍ଞାନର ଇତିହାସବିତ୍‌ମାନେ ପୃଥିବୀର ଆଦି ବୈଜ୍ଞାନିକ କହିଲେ ଗ୍ରୀସ୍ ଦେଶର ବୈଜ୍ଞାନିକଙ୍କୁ ସୂଚାଉଥିଲେ । ସେହିମାନଙ୍କ ପାଖରୁ ଆଧୁନିକ ବିଜ୍ଞାନର ଆରମ୍ଭ ବୋଲି ସେମାନେ ହେଲେ ଆଦି ବୈଜ୍ଞାନିକ । ଠିକ୍ ଯେପରି ଆମ ଦେଶରେ ସର୍ବପ୍ରଥମ କାବ୍ୟ ରଚନା କରିଥିବାରୁ ବାଲ୍ମୀକିଙ୍କୁ ଆମେ ଆଦିକବି ଆଖ୍ୟା ଦେଇଥାଉ । ଆଧୁନିକ ବିଜ୍ଞାନକୁ ଏହି ଆଦି ବୈଜ୍ଞାନିକମାନଙ୍କର ଅବଦାନ କେତେ, ଆଲୋଚନା କରିବା ଏହି ପୁସ୍ତକର ଉଦ୍ଦେଶ୍ୟ । ଏହାହିଁ ହେଉଛି ବିଜ୍ଞାନର ଆଦିପର୍ବ ।

ନିରପେକ୍ଷ ଦୃଷ୍ଟିରୁ ଆଲୋଚନା କଲେ ଆଦି ବୈଜ୍ଞାନିକଙ୍କର ଗୌରବ ପାଇବାକୁ ଖାଲି ଗ୍ରୀସ୍‌ଦେଶର ବୈଜ୍ଞାନିକ କାହିଁକି, ଭାରତର ବହୁ ବୈଜ୍ଞାନିକ ହକ୍‌ଦାର । ଗ୍ରୀକ୍ ବୈଜ୍ଞାନିକମାନଙ୍କ ସହିତ ସେମାନଙ୍କୁ ନ ଯୋଡ଼ିଲେ ଭାରତର ଆଦି ବୈଜ୍ଞାନିକମାନଙ୍କ ପ୍ରତି ଅବିଚାର ହେବ । ଭାରତର ବହୁ ବୈଜ୍ଞାନିକ ଭରଦ୍ୱାଜ, ଆତ୍ରେୟ, ଲଗଧ, ଜୀବକ, ପାତଞ୍ଜଳି, ଚରକ, ଶୁଶ୍ରୁତ,

ବୌଧାୟନ, ଗର୍ଗ, କପିଳ, କଣାଦ ଆଦି ଖ୍ରୀଷ୍ଟ ଜନ୍ମ ହେବାର ବହୁ ପୂର୍ବରୁ ପ୍ରସିଦ୍ଧି ଅର୍ଜନ କରିଥିଲେ । ସେମାନେ ସମସ୍ତେ ଗ୍ରୀକ୍ ବୈଜ୍ଞାନିକମାନଙ୍କ ଭଳି ଦର୍ଶନ ବ୍ୟତୀତ ଜ୍ୟୋତିଷ, ଗଣିତ, ଜ୍ୟାମିତି, ଚିକିତ୍ସାବିଜ୍ଞାନ ଆଦିରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ପ୍ରକୃତପକ୍ଷେ କହିବାକୁ ଗଲେ ଗ୍ରୀକ୍ ଓ ଭାରତୀୟ ବୈଜ୍ଞାନିକମାନେ ହେଉଛନ୍ତି ଆଦି ବୈଜ୍ଞାନିକ । ସେହିମାନଙ୍କ ପ୍ରାରମ୍ଭିକ ଗବେଷଣା ଆଧୁନିକ ବିଜ୍ଞାନର ଦିଗ୍‌ଦର୍ଶକ ଭାବରେ କାର୍ଯ୍ୟ କରି ଆସିଛି । ଏହି ଆଦି ବୈଜ୍ଞାନିକମାନେ ଯଦି ଯଥା ସମୟରେ ନିଜ ନିଜ ଗବେଷଣା କରି ନ ଥାନ୍ତେ, ତେବେ ଆଧୁନିକ ବିଜ୍ଞାନର ରୂପ ଯେ ଅନେକାଂଶରେ ବଦଳିଯାଇଥାନ୍ତା ଏଥିରେ ସନ୍ଦେହ ନାହିଁ ।

ଏହା ପୂର୍ଣ୍ଣଭାବରେ ସ୍ୱୀକାର୍ଯ୍ୟ ଯେ ଗ୍ରୀକ୍ ବୈଜ୍ଞାନିକମାନଙ୍କ ବହୁ ପୂର୍ବରୁ ଭାରତୀୟ ବୈଜ୍ଞାନିକମାନେ ପ୍ରସିଦ୍ଧି ଅର୍ଜନ କରିଥିଲେ । ଭାରତକୁ ଆର୍ଯ୍ୟମାନେ ଆସିଲେ ସୈନ୍ଧବ ଉପତ୍ୟକା ସଭ୍ୟତାର କିଛିବର୍ଷ ପରେ । ବହୁ ଇତିହାସବିତ୍‌ଙ୍କ ମତରେ ଖ୍ରୀ:ପୂ: ଦୁଇ-ହଜାର ବର୍ଷ ବେଳକୁ ଆର୍ଯ୍ୟମାନେ ଭାରତରେ ପ୍ରବେଶ କରି ସାରିଥିଲେ । ଆର୍ଯ୍ୟମାନଙ୍କ ପ୍ରବେଶଠାରୁ ଭାରତରେ ବେଦରଚନା, ପୁରାଣରଚନା, ଜ୍ୟୋତିଷ, ଗଣିତ, ଚିକିତ୍ସାବିଜ୍ଞାନ ଆଦି ରଚନା ଆରମ୍ଭ ହୋଇଛି । ଭାରତର ରାମାୟଣ, ମହାଭାରତ, ସେହି ସମୟର ରଚନା । ସତ୍ୟଯୁଗ, ତ୍ରେତାୟାଯୁଗ, ଦ୍ୱାପର ଯୁଗ ମଧ୍ୟ ସେହି ସମୟ ଭିତରେ ଅତିବାହିତ ହୋଇଯାଇଛି । ରାମରାବଣ ଯୁଦ୍ଧ, ମହାଭାରତ ଯୁଦ୍ଧ ସବୁ ସେହି କାଳ ଭିତରେ । ଖ୍ରୀ: ପୂ: ଦୁଇହଜାର ବର୍ଷ ଠାରୁ ଖ୍ରୀ: ପୂ. ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଦେଢ଼ହଜାର ବର୍ଷ ଭିତରେ ଭାରତରେ ସବୁକିଛି ଆଦି ରଚନା କରାହୋଇଛି । ତେଣୁ ଭାରତର ବଡ଼ ବଡ଼ ଆଦି ବୈଜ୍ଞାନିକମାନେ ଖ୍ରୀ:ପୂ: ଦୁଇସହସ୍ର ଠାରୁ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀ ମଧ୍ୟରେ ପ୍ରସିଦ୍ଧି

ଅର୍ଜନ କରିଥିବା ସ୍ୱାଭାବିକ । ତେଣୁ ସେ ଦୃଷ୍ଟିରୁ ଦେଖିଲେ ସେମାନେ ଗ୍ରୀକ୍ ଆଦି ବୈଜ୍ଞାନିକମାନଙ୍କଠାରୁ ଢେର୍ ପୁରୁଣା ହେବା କଥା ।

ଆଦି ବୈଜ୍ଞାନିକମାନଙ୍କ ମଧ୍ୟରେ ସାଧାରଣତଃ ସେହି ବୈଜ୍ଞାନିକମାନଙ୍କୁ ନିଆଯାଇଛି, ଯେଉଁମାନେ ଖ୍ରୀଷ୍ଟ ଜନ୍ମ ହେବା ବହୁପୂର୍ବରୁ ପ୍ରସିଦ୍ଧି ଅର୍ଜନ କରିଥିଲେ । ଖ୍ରୀଷ୍ଟ ଜନ୍ମ ହେବା ପରେ ଖ୍ୟାତି ଲଭିଥିବା ବୈଜ୍ଞାନିକମାନଙ୍କୁ ଏଥିରେ ନିଆଯାଇ ନାହିଁ । ସେଥିପାଇଁ ଭାରତର ବହୁ ବୈଜ୍ଞାନିକ ଯଥା ନାଗାର୍ଜୁନ, ଶ୍ରୀସେନ, ବାଗ୍‌ଭଟ୍ଟ, ମାଧବକର, ଭାବ ମିଶ୍ର, ମେଦାତିଥି, ଆର୍ଯ୍ୟଭଟ୍ଟ, ବରାହମିହିର, ଭାସ୍କରାଚାର୍ଯ୍ୟ, ବ୍ରହ୍ମଗୁପ୍ତ, ଶାଳହୋତ୍ର, ଖନା ଓ ଭୋଜ ଆଦିଙ୍କୁ ଏହି ପୁସ୍ତକରେ ବାଦ୍ ଦିଆଯାଇଛି । ଭାରତୀୟ ବିଜ୍ଞାନକୁ ଏମାନଙ୍କର ଦାନ ଅତୁଳନୀୟ । ବିଜ୍ଞାନଜଗତ ଏମାନଙ୍କ ଦାନ ବଳରେ ଆଜି ପରିପୁଷ୍ଟ । ବୈଜ୍ଞାନିକ ଶାଳହୋତ୍ରଙ୍କ ପ୍ରାଣୀ ଚିକିତ୍ସା ଶାସ୍ତ୍ରରେ ଯେଉଁ ଅଗାଧ ଗବେଷଣା, ସଂଖ୍ୟା ଗବେଷଣାରେ ମେଦାତିଥିଙ୍କ ଦାନ, ବ୍ରହ୍ମଗୁପ୍ତ, ବରାହମିହିର, ଭାସ୍କରଙ୍କ ଗଣିତ, ବୀଜଗଣିତ, ଜ୍ୟୋତିଷବିଜ୍ଞାନରେ ଦାନ, ବାଗ୍‌ଭଟ୍ଟ, ମାଧବକର, ଭାବ ମିଶ୍ର ଆଦିଙ୍କ ଚିକିତ୍ସାବିଜ୍ଞାନରେ ଦାନ, ନାଗାର୍ଜୁନଙ୍କ ରସାୟନ ବିଜ୍ଞାନରେ ଦାନ, ଖନାଙ୍କର କୃଷି ବିଜ୍ଞାନରେ ଦାନ, ଭୋଜଙ୍କର ଜାହାଜ ନିର୍ମାଣରେ ଦାନ, ଉମାସତୀଙ୍କର ପ୍ରାଣିବିଜ୍ଞାନରେ ଦାନ ଅତି ବିରାଟ । ସେମାନଙ୍କ ଗବେଷଣା ଦେଖିଲେ ପୁରାତନ ଭାରତରେ ବିଜ୍ଞାନ ଚର୍ଚ୍ଚା କେତେ ଉଚ୍ଚକୋଟୀର ଥିଲା ତାହା ସହଜରେ ଜଣାପଡ଼େ । ସେମାନେ ସମସ୍ତେ ଖ୍ରୀଷ୍ଟ ଜନ୍ମ ହେବାର ପରେ ପ୍ରସିଦ୍ଧି ଅର୍ଜନ କରିଥିବାରୁ ଏହି ପୁସ୍ତକରେ ସେମାନଙ୍କ ବିଷୟରେ ଆଲୋଚନା କରାଯାଇ ନାହିଁ । ସେମାନେ ପ୍ରାଚୀନ ଭାରତୀୟ ବିଜ୍ଞାନର ଯେ ପ୍ରାଣ ପ୍ରତିଷ୍ଠାତା ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

## ଦ୍ୱିତୀୟ ଅଧ୍ୟାୟ

# ପୃଥିବୀର ଆଦି ବୈଜ୍ଞାନିକ ଥେଲସ୍

ଗ୍ରୀକ୍ ବୈଜ୍ଞାନିକମାନଙ୍କ. ମଧ୍ୟରେ ଥେଲସ୍ ହେଉଛନ୍ତି ପ୍ରାଚୀନତମ । ସେଥିପାଇଁ କେତେକ ତାଙ୍କୁ ଗ୍ରୀସ୍‌ଦେଶର ପ୍ରକୃତ



ଥେଲସ୍

ଆଦି ବୈଜ୍ଞାନିକ ବୋଲି କହନ୍ତି । ବହୁ ପାଶ୍ଚାତ୍ୟ ଇତିହାସବିତ୍ କହନ୍ତି, ସେ ଖାଲି ଗ୍ରୀସ୍ ଦେଶର ଆଦି ବୈଜ୍ଞାନିକ କାହିଁକି, ସାରା ପୃଥିବୀରେ ସେ ହେଉଛନ୍ତି ସର୍ବପ୍ରଥମ ବୈଜ୍ଞାନିକ । ଗ୍ରୀସ୍ ଦେଶର ଆଦି ବୈଜ୍ଞାନିକ ପ୍ଲେଟୋ, ଏରିଷ୍ଟଟଲ, ପିଥାଗୋରାସ୍, ଇଉକ୍ଲିଡ୍ , ଡିମୋକ୍ରିଟସ୍ ଆଦିଙ୍କ ବହୁ ପୂର୍ବରୁ ସେ ପ୍ରସିଦ୍ଧି ଅର୍ଜନ କରିଥିଲେ ।

ଗ୍ରୀସ୍‌ଦେଶ ଇଉରୋପ ମହାଦେଶର ଦକ୍ଷିଣପୂର୍ବ ଅଂଶରେ ଅବସ୍ଥିତ । ଏହି ଦେଶଟି ବହୁ ଦ୍ୱୀପପୁଞ୍ଜର ସମଷ୍ଟି । ଖ୍ରୀଷ୍ଟ ଜନ୍ମ ହେବାର ବହୁପୂର୍ବରୁ ଏଠାରେ ସଭ୍ୟଲୋକେ ବସବାସ କରି ଆସୁଥିଲେ । ସେହି ସଭ୍ୟ ଲୋକମାନଙ୍କ ଭିତରୁ ଅନେକେ ବିଜ୍ଞାନରେ ପାରଦର୍ଶିତା ଅର୍ଜନ କରିଥିଲେ । ଗ୍ରୀସ୍‌ଦେଶରେ ବିଜ୍ଞାନ ଚର୍ଚ୍ଚା ଆୟୋନିଆ ଜିଲ୍ଲାରେ ବେଶ୍ ପ୍ରତିଷ୍ଠା ଅର୍ଜନ କରିଥିଲା । ଏହି ଜିଲ୍ଲାଟି ଏସିଆ ମାଇନରର ପଶ୍ଚିମ ଭାଗର ଏକ ଅଂଶ ଓ ଏହା ଉପକୂଳର କେତେଗୁଡ଼ିଏ ଦ୍ୱୀପକୁ ନେଇ ଗଠିତ । ଆୟୋନିଆନମାନଙ୍କ ଦ୍ୱାରା ଏଠାରେ ଗୁଡ଼ିଏ ସହର ଓ ଶିକ୍ଷାକେନ୍ଦ୍ର ଗଢ଼ି ଉଠିଥିଲା । ଖ୍ରୀଷ୍ଟପୂର୍ବ ଷଷ୍ଠ ଓ ସପ୍ତମ ଶତାବ୍ଦୀବେଳକୁ ଏହା ଏକ ପ୍ରସିଦ୍ଧ ବିଜ୍ଞାନଚର୍ଚ୍ଚା କେନ୍ଦ୍ର ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲା ।

ଏହି ଆୟୋନିଆନ ବୈଜ୍ଞାନିକମାନଙ୍କ ମଧ୍ୟରେ ଥେଲସ୍ ହେଉଛନ୍ତି ସର୍ବପ୍ରଥମ । ଗ୍ରୀସ୍‌ର ସୁବିଖ୍ୟାତ ଆୟୋନିଆ ଶିକ୍ଷା ସଂପ୍ରଦାୟର ସେ ଥିଲେ ପ୍ରତିଷ୍ଠାତା । ସେ ଆୟୋନିଆ ଜିଲ୍ଲାର ମିଲଟ୍‌ସ ଦ୍ୱୀପରେ ଜନ୍ମଗ୍ରହଣ କରିଥିଲେ । ସେଥିପାଇଁ ସେ ମିଲଟ୍‌ସର ଥେଲସ୍ ବୋଲି ପରିଚିତ । ତାଙ୍କ ଜନ୍ମକାଳ ସମ୍ପର୍କରେ ଠିକ୍ ବିବରଣୀ ମିଳେ ନାହିଁ । କେତେକଙ୍କ ମତରେ ସେ ଖ୍ରୀଷ୍ଟପୂର୍ବ ୬୪୦ ମସିହାରେ ଓ ଆଉ କେତେକଙ୍କ ମତରେ ସେ ଖ୍ରୀଷ୍ଟପୂର୍ବ

୫୪୬ ମସିହାରେ ଜନ୍ମ ପରିଗ୍ରହ କରିଥିଲେ । ଥେଲସ୍‌ଙ୍କ ପିତା ହେଉଛନ୍ତି ଏକ୍‌ସାମିୟେସ୍ ଓ ସେ ଜଣେ ଧନୀ ବ୍ୟବସାୟୀ ଥିଲେ । ଥେଲସ୍ ଖାଲି ଜଣେ ବୈଜ୍ଞାନିକ ନୁହଁନ୍ତି, ସେ ବି ମଧ୍ୟ ଜଣେ ବଡ଼ ଦାର୍ଶନିକ ଥିଲେ । ଆୟୋନିୟା ଦର୍ଶନର ସେ ପ୍ରତିଷ୍ଠାତା ଭାବରେ ପ୍ରସିଦ୍ଧ । ଥେଲସ୍ ଦର୍ଶନ, ଗଣିତ, ଜ୍ୟାମିତି ଓ ଜ୍ୟୋତିର୍ବିଜ୍ଞାନରେ ଗବେଷଣା କରି ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ ।

କଥିତ ଅଛି ଥେଲସ୍ ନିଜ ଜନ୍ମସ୍ଥାନ ମିଲିଟସ୍‌ରୁ ବ୍ୟବସାୟ ଉପଲକ୍ଷେ ବେବିଲୋନ, ମିଶର ଆଦି ଦେଶକୁ ଯାଇଥିଲେ । ସେ ମିଶରରେ ବିଜ୍ଞାନ, ଜ୍ୟୋତିଷବିଜ୍ଞାନ, ଗଣିତରେ ପ୍ରଭୂତ ଉନ୍ନତି ଦେଖି ନିଜ ଜନ୍ମସ୍ଥାନ ମିଲିଟସ୍‌କୁ ଫେରିଆସି ସେଠାରେ ଏକ ଶିକ୍ଷାକେନ୍ଦ୍ର ପ୍ରତିଷ୍ଠା କରିଥିଲେ । ଗ୍ରୀସ୍‌ଦେଶରେ ଏହା ହେଉଛି ଏକ ପ୍ରଧାନ ଶିକ୍ଷାକେନ୍ଦ୍ର । ବିଜ୍ଞାନ, ଦର୍ଶନ, ଗଣିତ ଆଦିରେ ଯାହାକିଛି ଉନ୍ନତି ଗ୍ରୀସ୍‌ରେ ଦେଖାଦେଇଥିଲା, ତାହା ହେଉଛି ଏହି ଶିକ୍ଷାକେନ୍ଦ୍ର ପ୍ରତିଷ୍ଠା ପରେ । ଏଥିପୂର୍ବରୁ ଗ୍ରୀସ୍‌ଦେଶର ବିଜ୍ଞାନ, ଦର୍ଶନ ଆଦି ସମ୍ବନ୍ଧରେ କେହି କିଛି ଜାଣି ନ ଥିଲେ ।

ଥେଲସ୍ ନିଜ ଶିକ୍ଷାକେନ୍ଦ୍ରରେ ଗ୍ରୀସ୍‌ଦେଶର ଲୋକମାନଙ୍କୁ ଜ୍ୟାମିତି ଓ ଜ୍ୟୋତିଷବିଜ୍ଞାନ ଶିକ୍ଷା ଦେଉଥିଲେ । ସେ ଜାଣିଥିଲେ ସୂର୍ଯ୍ୟ ଓ ପୃଥିବୀ ମଧ୍ୟରେ ଚନ୍ଦ୍ର ଅବସ୍ଥାନ କଲେ ସୂର୍ଯ୍ୟୋପରାଗ ହୁଏ । ଏହି ଜ୍ଞାନରୁ ସେ ଗଣନା କରି ଖ୍ରୀଷ୍ଟପୂର୍ବ ୫୮୫ ମସିହା ମେ ମାସ ୨୮ ତାରିଖ ଦିନ ସୂର୍ଯ୍ୟୋପରାଗ ହେବବୋଲି ଭବିଷ୍ୟତ ବାଣୀ କରି ସଫଳ ହୋଇଥିଲେ ଓ ଗ୍ରୀକ୍ ଲୋକେ ତାଙ୍କ ଅଦ୍ଭୁତ ପାଣ୍ଡିତ୍ୟରେ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଥିଲେ । କଥିତ ଅଛି ଏହି ସମୟରେ ଆୟୋନିଆ ଜିଲ୍ଲା ନିକଟବର୍ତ୍ତୀ ଲିଡିୟାନ୍‌ସ ଓ ମେଡିସ୍

ନାମକ ଦୁଇଟି ଜାତି ପରସ୍ପର ମଧ୍ୟରେ ଯୁଦ୍ଧରେ ବ୍ୟାପୃତ ଥିଲେ । ଥେଲସ୍ ପ୍ରଚାର କରିଥିଲେ ଯେ ସେମାନେ ଯୁଦ୍ଧ କରୁଥିବାବେଳେ ସେମାନଙ୍କ ଅତ୍ୟାଚାରରୁ ସୂର୍ଯ୍ୟ ଆକାଶରୁ ଅଦୃଶ୍ୟ ହେବେ । ସତକୁ ସତ ସେମାନେ ଯୁଦ୍ଧ କରୁଥିଲାବେଳେ ସୂର୍ଯ୍ୟ ଆକାଶରୁ ଅଦୃଶ୍ୟ ହୋଇଗଲେ, ଚାରିଆଡ଼େ ଅନ୍ଧକାର ଘୋଟି ଆସିଲା । ଏହି ଘଟଣା ଦେଖି ସେମାନେ ଅତ୍ୟଧିକ ଭୟଭୀତ ହୋଇ ପଡ଼ିଥିଲେ ଓ ଯୁଦ୍ଧ ନ କରି ନିଜ ନିଜ ଭିତରେ ସନ୍ଧିସ୍ଥାପନ କରି ପକାଇଥିଲେ । ଏଥିରୁ ଥେଲସ୍‌ଙ୍କର ଜ୍ୟୋତିଷ ବିଜ୍ଞାନରେ ପାରଦର୍ଶିତା ଥିବା ଜଣାପଡ଼ିଥିଲା । ସେ ଆହୁରି ଜାଣିଥିଲେ ଯେ ଚନ୍ଦ୍ରର ଆଲୋକ ସୂର୍ଯ୍ୟାଲୋକର ପ୍ରତିଫଳନ ମାତ୍ର ଓ ସୂର୍ଯ୍ୟାଲୋକ ଯୋଗୁଁ ଚନ୍ଦ୍ର ଉଜ୍ଜ୍ୱଳ ଦିଶେ ।

ଜ୍ୟାମିତି ଶାସ୍ତ୍ରରେ ଥେଲସ୍‌ଙ୍କର ଅଶେଷ ପାରଦର୍ଶିତା ଥିଲା । ସେ ଆବିଷ୍କାର କରିଥିଲେ ଯେ ଗୋଟିଏ ତ୍ରିଭୁଜର ଯଦି ଦୁଇଟି ବାହୁ ସମାନ, ତେବେ ସେମାନଙ୍କ ସମ୍ମୁଖବର୍ତ୍ତୀ କୋଣଦ୍ୱୟ ମଧ ସମାନ । ସେ ଆହୁରି ଆବିଷ୍କାର କରିଥିଲେ ଯେ ଦୁଇଟି ସରଳରେଖା ଯଦି ପରସ୍ପରକୁ ଛେଦ କରନ୍ତି, ତେବେ ସେମାନଙ୍କ ବିପରୀତ କୋଣଗୁଡ଼ିକ ସମାନ ହେବ । "ଗୋଟିଏ ବୃତ୍ତକୁ ଏହାର ବ୍ୟାସ ସମଦ୍ୱିଭାଗରେ ବିଭକ୍ତ କରେ" ହେଉଛି ଥେଲସ୍‌ଙ୍କ ଅନ୍ୟତମ ଆବିଷ୍କାର । ଗୋଟିଏ ତ୍ରିଭୁଜର ତିନୋଟିଯାକ କୋଣର ସମଷ୍ଟି ଦୁଇ ସମକୋଣ ସଙ୍ଗେ ସମାନ, ଏହା ପ୍ରଥମେ ଥେଲସ୍‌ଙ୍କ ମୁଣ୍ଡରୁ ବାହାରିଥିଲା । ସେ ଆହୁରି ପ୍ରମାଣ କରିଥିଲେ, ସମାନ କୋଣ ବିଶିଷ୍ଟ ଦୁଇଟି ତ୍ରିଭୁଜର ବାହୁଗୁଡ଼ିକ ପରସ୍ପର ପ୍ରତି ସମାନୁପାତିକ । ତାଙ୍କର ଜ୍ୟାମିତି ଅଧ୍ୟୟନ ପ୍ରଣାଳୀ ଖୁବ୍ ଉଚ୍ଚକୋଟୀର । ତାଙ୍କ ଆବିଷ୍କୃତ ଜ୍ୟାମିତିକ ତଥ୍ୟକୁ ଇଉକ୍ଲିଡ୍ ଗ୍ରହଣ କରି ନିଜ ଜ୍ୟାମିତି

ଲେଖିଥିଲେ । ଥେଲସ୍‌ଙ୍କ ଗଣିତଜ୍ଞାନ ଏତେ ପ୍ରଖର ଥିଲା ଯେ, ସେ ମିଶରର ପିରାମିଡ୍ ଉପରକୁ ନ ଯାଇ ପିରାମିଡ଼ର ଛାଇକୁ ମାପି ପିରାମିଡ୍‌ର ଉଚ୍ଚତା କହିଦେଇ ପାରୁଥିଲେ । ସମୁଦ୍ର ଭିତରେ ଥିବା ଜାହାଜ କୂଳଠାରୁ କେତେ ଦୂରରେ ଅଛି ନ ମାପି ଗଣନା କରି କହି ଦେଉଥିଲେ । କଥିତ ଅଛି ମିଶରର ରାଜା ଏମାସିସ୍ ଥେଲସ୍‌ଙ୍କ ଏଭଳି ପାଣ୍ଡିତ୍ୟ ଦେଖି ମୁଗ୍ଧ ହୋଇଯାଇଥିଲେ ।

ଥେଲସ୍ ଯେତେବେଳେ ମିଶରରେ ବ୍ୟବସାୟ ଉପଲକ୍ଷେ ବୁଲୁଥିଲେ, ମିଶରର ଜମିମାପ ପ୍ରଣାଳୀରୁ ଏହିସବୁ ଜ୍ୟାମିତିକ ଜ୍ଞାନ ତାଙ୍କ ମୁଣ୍ଡରେ ଖେଳିଥିଲା । ସେ ଏହା ଉପରେ ଗବେଷଣା କରି ଉପରୋକ୍ତ ସୂତ୍ର ସବୁ ଆବିଷ୍କାର କରିଥିଲେ । ସେ ତାଙ୍କର ଜ୍ୟୋତିଷ ଜ୍ଞାନ ମିଶର ଓ ମେସୋପଟେମିଆ ଭ୍ରମଣ କାଳରେ ଆହରଣ କରିଥିଲେ । ସେ ଏହିସବୁ ଗବେଷଣା କରିବା ପୂର୍ବରୁ ନିଜ ବ୍ୟବସାୟ ନେଇ ବହୁ ଦେଶ ଭ୍ରମଣ କରିଥିଲେ । କଥିତ ଅଛି ଥେଲସ୍ ଜଣେ ତେଲ ଓ ଲୁଣ ବ୍ୟବସାୟୀ ଥିଲେ । ସେ ମେସୋପଟେମିଆରେ ଭ୍ରମଣ କରୁଥିଲାବେଳେ କେତେକ ଜ୍ୟୋତିଷୀମାନଙ୍କ ସଂସ୍ପର୍ଶରେ ଆସି ସୂର୍ଯ୍ୟୋପରାଗ ସମ୍ପର୍କୀୟ କେତେକ ଜ୍ୟୋତିଷୀଗଣନା ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିଥିଲେ । ସେ ସେମାନଙ୍କ ସଂଗୃହୀତ ତଥ୍ୟରୁ ଜାଣି ପାରିଥିଲେ ଯେ ପ୍ରତି ୧୮ ବର୍ଷ ଓ ୧୧ ଦିନ ବ୍ୟବଧାନରେ ସୂର୍ଯ୍ୟୋପରାଗ ସଂଘଟିତ ହୁଏ । ସେ ସେହି ଜ୍ଞାନରୁ ଗଣନା କରି ଉପରେ କୁହାଯାଇଥିବା ଖ୍ରୀ:ପୂ: ୫୮୫ ମସିହା ମେ ମାସ ୨୮ ତାରିଖ ଦିନ ସୂର୍ଯ୍ୟୋପରାଗ ହେବ ବୋଲି ଭବିଷ୍ୟତ ବାଣୀ କରି ଯୁଦ୍ଧରେ ବ୍ୟାପୃତ ଦୁଇଟି ଜାତିକୁ କିପରି ଭୟଭୀତ କରି ପକାଇଥିଲେ, ତାହା ଉପରେ ବର୍ଣ୍ଣିତ ହୋଇଅଛି । ଗ୍ରୀକ୍ ଇତିହାସବିତ୍ ହିରୋଡୋଟସ୍

କହନ୍ତି, ଏହା ପ୍ରକୃତ ସତକଥା । ଉପରୋକ୍ତ ଦୁଇଜାତି ପ୍ରକୃତରେ ଯୁଦ୍ଧ ଛାଡ଼ି ନିଜ ନିଜ ଭିତରେ ସନ୍ଧି କରି ପକାଇଥିଲେ ।

ଥେଲସ୍ ଭାବୁଥିଲେ ଏହି ବିଶ୍ୱର ଏକ ନିର୍ଦ୍ଦିଷ୍ଟ ପଦ୍ଧତି ଅନୁଯାୟୀ ନାନା ଘଟଣା ଘଟେ । ଏହିସବୁ ପ୍ରାକୃତିକ ଘଟଣା ନାନା ସୂତ୍ର ଓ ନିୟମ ଦ୍ୱାରା ପରିଚାଳିତ । ଏହି ବିଶ୍ୱର ଘଟଣାଗୁଡ଼ିକ କାହାରି ଇଚ୍ଛାଦ୍ୱାରା ପରିଚାଳିତ ନୁହେଁ । ଥେଲସ୍‌ଙ୍କ ଏହି ପ୍ରାକୃତିକ ନିୟମ ଧାରଣାକୁ ସେ ଯୁଗର ଓ ତାଙ୍କ ସମସାମୟିକ ପଣ୍ଡିତ ଓ ଜ୍ଞାନୀ ଲୋକମାନେ ଗ୍ରହଣ କରୁ ନ ଥିଲେ । ସବୁ ସୃଷ୍ଟି ମୂଳରେ ଭଗବାନ୍ ଓ ଭଗବାନ୍‌ଙ୍କ ଇଚ୍ଛାରେ ପ୍ରକୃତି ପରିଚାଳିତ, ଏଭଳି ଭାବଧାରା ଅନ୍ୟମାନେ ପ୍ରଚାର କରୁଥିବାବେଳେ ସେ ତାହାର ବିରୋଧ କରୁଥିଲେ ।

ଥେଲସ୍‌ଙ୍କ ଦର୍ଶନ ବିଦ୍ୟାରେ ପ୍ରଗାଢ଼ ବ୍ୟୁତ୍ପତ୍ତି ଥିଲା । ସେ ଯୁଗରେ ସେ ଜଣେ ବଡ଼ ଦାର୍ଶନିକ ବୋଲି ଖ୍ୟାତି ଅର୍ଜନ କରିଥିଲେ । କିନ୍ତୁ ତାଙ୍କ ଦର୍ଶନ ଚର୍ଚ୍ଚା ପାର୍ଥିବ ବସ୍ତୁର ସୃଷ୍ଟି ନେଇ ସୀମିତ ଥିଲା । ସେ ଭାବୁଥିଲେ ଗୋଟିଏ ମୂଳ ପଦାର୍ଥରୁ ଏହି ବିଶ୍ୱ ସୃଷ୍ଟି ହୋଇଛି । ତାଙ୍କ ମତରେ ଏହି ପୃଥିବୀର ସୃଷ୍ଟି ଜଳରୁ । ସେ ଆହୁରି ପ୍ରଚାର କରିଥିଲେ ପୃଥିବୀ ଥାଳି ପରି ଚେପ୍‌ଟା, ଜଳ ଉପରେ ଭାସମାନ ଅବସ୍ଥାରେ ରହିଛି । ପୃଥିବୀ ଭୂମଧ୍ୟସାଗର ଓ ଗ୍ରୀସ୍‌କୁ କେନ୍ଦ୍ରକରି ଏକ ବିରାଟ ଭୂମିଖଣ୍ଡ ବୋଲି ସେ ଭାବୁଥିଲେ । ଏହି ଭୂମିଖଣ୍ଡ ଚାରିପାଖରେ ସମୁଦ୍ର ଥିଲା ଓ ସମୁଦ୍ରରେ ଏହି ଭୂମିଖଣ୍ଡମାନ ଭାସୁଥିଲା । ସମ୍ଭବତଃ ସେ ହେଉଛନ୍ତି ସର୍ବପ୍ରଥମ ଦାର୍ଶନିକ ଯେ କି ସବୁ ଚିନ୍ତାଧାରାରେ ସେ ଭଗବାନ୍‌ଙ୍କ ଅବସ୍ଥିତି ଓ ଇଚ୍ଛାକୁ ଯୋଡ଼ିବାକୁ ଭଲ ପାଉ ନ ଥିଲେ । ପୃଥିବୀ ଓ ବିଶ୍ୱର

ଭୌତିକ ପ୍ରକୃତି ଓ ତା'ର ନିୟମକୁ ଅଧିକ ଗୁରୁତ୍ୱକୁ ଆଣିବାକୁ ଚେଷ୍ଟା କରୁ ନ ଥିଲେ । ଏଭଳି ଅତ୍ୟାଧୁନିକ ଚିନ୍ତାଧାରା ସେ ଯୁଗରେ କିଭଳି ଥେଲସ୍‌ଙ୍କ ମୁଣ୍ଡରେ ପଶିଥିଲା ଏହା ବିସ୍ମୟପୂର୍ଣ୍ଣ । ତାଙ୍କର ବିରାଟ ବ୍ୟକ୍ତିତ୍ୱର ଏହା ଏକ ପରାକାଷ୍ଠା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଜ୍ୟୋତିଷ ଚର୍ଚ୍ଚା ସଙ୍ଗେ ସଙ୍ଗେ ସେ ପଦାର୍ଥବିଜ୍ଞାନରେ ମଧ ଚର୍ଚ୍ଚା କରିଥିଲେ । ଚୁମ୍ବକ ପଥର ଲୁହାକୁ କିଭଳି ଟାଣେ ସେ ସର୍ବପ୍ରଥମେ ଆବିଷ୍କାର କରି ଚୁମ୍ବକ ବିଜ୍ଞାନର ପ୍ରଥମ ମୂଳଦୁଆ ପକାଇଥିଲେ । ଘର୍ଷଣ ବିଦ୍ୟୁତ୍ ଯାହାକି ପରକାଳରେ ବିଦ୍ୟୁତ୍ ବିଜ୍ଞାନର ମୂଳଦୁଆ ପକାଇଥିଲା, ତାଙ୍କରିଦ୍ୱାରା ସର୍ବପ୍ରଥମ ଆବିଷ୍କୃତ ହୋଇଥିଲା । ଏମ୍ବର ନାମକ ଏକ କଠିନ ପଦାର୍ଥକୁ ରେଶମ କନା ସହିତ ଘଷିଲେ ବିଦ୍ୟୁତ୍ ଶକ୍ତି ଉତ୍ପନ୍ନ ହୁଏ, ଫଳରେ ଏମ୍ବର ବିଦ୍ୟୁତ୍ ଆବେଶଯୁକ୍ତ ହୁଏ । ଏହା ହେବାଦ୍ୱାରା ଏହା ଛୋଟ ଛୋଟ ଟୁକୁରା ହାଲୁକା ପଦାର୍ଥକୁ ନିଜ ଆଡ଼କୁ ଆକର୍ଷଣ କରିପାରେ । ଥେଲସ୍‌ଙ୍କ ଏହି ଆବିଷ୍କାର କମ୍ ଯୁଗାନ୍ତକାରୀ ନୁହେଁ । ଏହି ଆବିଷ୍କାର ଫଳରେ ସେ ଘର୍ଷଣ ବିଦ୍ୟୁତ୍‌ର ପ୍ରଥମ ଆବିଷ୍କାରକ ଓ ବିଦ୍ୟୁତ୍ ବିଜ୍ଞାନର ପ୍ରତିଷ୍ଠାତା ଭାବରେ ସମ୍ମାନ ପାଆନ୍ତି ।

ଗ୍ରୀସ୍ ଦେଶରେ ଯେଉଁ ସପ୍ତଜ୍ଞାନୀ ପ୍ରସିଦ୍ଧି ଅର୍ଜନ କରିଥିଲେ, ସେମାନଙ୍କ ମଧ୍ୟରେ ଥେଲସ୍ ଥିଲେ ଜଣେ । ତାଙ୍କର ବହୁ ଆବିଷ୍କାର ପ୍ରମାଦଯୁକ୍ତ ଥିଲେହେଁ ଆଧୁନିକ ବିଜ୍ଞାନର ସର୍ବପ୍ରଥମ ସ୍ରଷ୍ଟାଭାବରେ ସେ ସମ୍ମାନ ପାଆନ୍ତି । ଇଉକ୍ଲିଡ୍‌ଙ୍କ ପୂର୍ବରୁ ସେ ଜ୍ୟାମିତି ବିଦ୍ୟାରେ ମୂଳଦୁଆ ପ୍ରଥମେ ପକାଇଥିଲେ ବୋଲି ଖ୍ୟାତି ଅର୍ଜିଛନ୍ତି ।

ଥେଲସ୍ ଖ୍ରୀ: ପୂ: ୫୪୬ ମସିହାରେ ଇହଧାମ ତ୍ୟାଗ କରିଥିଲେ ବୋଲି କେତେକ ପ୍ରମାଣ ଦିଅନ୍ତି, ଆଉ କେତେକଙ୍କ ମତରେ ତାହା ହେଉଛି ତାଙ୍କ ଜନ୍ମଦିବସ । ତାଙ୍କ ଜନ୍ମ ଓ ମୃତ୍ୟୁ ଦିବସ ଏବେବି ବିବଦମାନ । ଥେଲସ୍ଙ୍କ ଶିଷ୍ୟ ଭିତରେ ପିଥାଗୋରାସ୍ ହେଉଛନ୍ତି ପ୍ରସିଦ୍ଧତମ । ତାଙ୍କ ଛଡ଼ା ପୃଥିବୀର ସର୍ବପ୍ରଥମ ମାନଚିତ୍ରକାରୀ ଏନେକ୍ସିମେଣ୍ଡର ନାମକ ତାଙ୍କର ଆଉ ଏକ ଶିଷ୍ୟ ଥିଲେ । ସେ ଖ୍ରୀ:ପୂ: ୬୧୧ ମସିହାରୁ ଖ୍ରୀ:ପୂ: ୫୪୭ ଭିତରେ ଗ୍ରୀସ୍‌ରେ ପ୍ରସିଦ୍ଧି ଅର୍ଜନ କରିଥିଲେ ।

## ତୃତୀୟ ଅଧ୍ୟାୟ

# ବୈଜ୍ଞାନିକ ପିଥାଗୋରାସ୍

ପର ଅଧ୍ୟାୟରେ ବର୍ଣ୍ଣିତ ଅଛି, ଏରିଷ୍ଟଟଲଙ୍କ ଗୁରୁଦେବ ମହାନ୍ ଦାର୍ଶନିକ ପ୍ଲେଟୋ ଯେଉଁ ପିଥାଗୋରାସ୍ ସଂପ୍ରଦାୟର ଜନୈକ ଶିଷ୍ୟଙ୍କଠାରୁ ତାଙ୍କର ଗଣିତ ଜ୍ଞାନ ଆହରଣ କରିଥିଲେ, ସେହି ସଂପ୍ରଦାୟର ପ୍ରତିଷ୍ଠାତା ହେଉଛନ୍ତି ଏହି ପିଥାଗୋରାସ୍ । ପିଥାଗୋରାସ୍ ନାମ ଆଜି ସାରା ପୃଥିବୀର ପ୍ରତ୍ୟେକ ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କଠାରେ ସୁପରିଚିତ । ଜ୍ୟାମିତିରେ ଆମେ ଯେଉଁ ପିଥାଗୋରାସ୍ ଉପପାଦ୍ୟ ପଢୁ, ଗୋଟିଏ ସମକୋଣୀ ତ୍ରିଭୁଜର ସମକୋଣ ସନ୍ନିକଟ ବାହୁଦ୍ୱୟର ବର୍ଗକୁ ଯୋଗକଲେ, ତାହା ସମକୋଣ ସମ୍ମୁଖସ୍ଥ ବାହୁର ବର୍ଗ ସହିତ ସମାନ ହେବ, ତାହାହିଁ ପିଥାଗୋରାସ୍ଙ୍କ ଦ୍ୱାରା ସର୍ବପ୍ରଥମେ ଆବିଷ୍କୃତ ହୋଇଥିଲା ।



ପିଥାଗୋରାସ୍ ଉପପାଦ୍ୟ

ପିଥାଗୋରାସ୍ ହେଉଛନ୍ତି ଗ୍ରୀସ୍ ଦେଶର ଅନ୍ୟତମ ଦାର୍ଶନିକ ତଥା ବୈଜ୍ଞାନିକ । ସେ ଖ୍ରୀ:ପୂ: ୫୮୨ ମସିହାରେ ଗ୍ରୀସ୍ ଦେଶର ସାମୋସ ଅଞ୍ଚଳରେ ଥିବା ଏଜିଆନ ଦ୍ୱୀପରେ ଜନ୍ମଗ୍ରହଣ କରିଥିଲେ । ସେଥିପାଇଁ ତାଙ୍କୁ ସାମୋସ୍‌ର ପିଥାଗୋରାସ୍ ବୋଲି କୁହାଯାଏ । ସେ ତାଙ୍କର ଶିକ୍ଷାପାଇଁ ଥେଲସ୍‌ଙ୍କ ଶିକ୍ଷାକେନ୍ଦ୍ରକୁ



ପିଥାଗୋରାସ୍

ଯାଇଥିଲେ । ସେଠାରେ ସେ ଜ୍ୟାମିତି, ଗଣିତ ଆଦିରେ ଶିକ୍ଷାର୍ଜନ କରିଥିଲେ । ଖ୍ରୀ:ପୂ: ୫୨୯ ମସିହାରେ ସେ ଗ୍ରୀସ୍‌ର ସ୍ୱେଚ୍ଛାଚାରୀ ରାଜା ପଲିକ୍ରେଟଙ୍କ ଦ୍ୱାରା ବିତାଡ଼ିତ ହୋଇ ଦକ୍ଷିଣ ଇଟାଲୀରେ ଆଶ୍ରୟ ନେଇଥିଲେ । ସେ ସେଠାରେ ତାଙ୍କ ଶିଷ୍ୟବର୍ଗଙ୍କ ଦ୍ୱାରା ଏକ ଶିକ୍ଷାକେନ୍ଦ୍ର ଖୋଲିଥିଲେ । ଏତଦ୍‌ବ୍ୟତୀତ ସେ ପିଥାଗୋରାସ୍ ସଂପ୍ରଦାୟ ନାମକ ଏକ ଧର୍ମ ସଂପ୍ରଦାୟ ଗଠନ କରିଥିଲେ । ଏହି ସଂପ୍ରଦାୟର କାମ ହେଉଛି ଲୋକମାନଙ୍କୁ ଧର୍ମ, ଗଣିତ ଆଦି

ସମ୍ବନ୍ଧରେ ଶିକ୍ଷାଦେବା । ଏହି ସଂପ୍ରଦାୟର ସଭ୍ୟମାନେ ଧନୀ ଓ ଶିକ୍ଷିତ ଥିବାରୁ ତଥା ସେମାନେ ନିଜ ନିଜ ଭିତରେ ବହୁ ଗୋପନୀୟତା ରକ୍ଷା କରୁଥିବାରୁ ସାଧାରଣ ଲୋକେ ଏହି ସଂପ୍ରଦାୟକୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ ।

ପିଥାଗୋରାସ୍ ଓ ତାଙ୍କ ଶିଷ୍ୟମାନେ ଆତ୍ମାର ପୁନର୍ଜନ୍ମରେ ବିଶ୍ୱାସ କରୁଥିଲେ । ତେଣୁ ସେମାନେ ନିରାମିଷାଶୀ ଥିଲେ ଓ ଆତ୍ମାର ପରିଶୁଦ୍ଧି ନିମନ୍ତେ କେତେଗୁଡ଼ିଏ ନିୟମକାନୁନ ପ୍ରଣୟନ କରିଥିଲେ । ପିଥାଗୋରାସ୍ ବିଶ୍ୱାସ କରୁଥିଲେ ମଣିଷର ଆତ୍ମା ପଶୁଦେହରେ ମଧ୍ୟ ପ୍ରବେଶ କରିପାରେ ଓ ପଶୁର ଆତ୍ମା ମଣିଷ ଦେହରେ ପ୍ରବେଶ କରିପାରେ । ସେଥିପାଇଁ ଯେଉଁମାନେ ପବିତ୍ର ଜୀବନଯାପନ କରନ୍ତି, ସେମାନଙ୍କ ଆତ୍ମା ମଣିଷ ଶରୀରରେ ପ୍ରବେଶ କରେ ଓ ଯେଉଁମାନେ ପାପକାର୍ଯ୍ୟରେ ଲିପ୍ତ ରହନ୍ତି, ସେମାନଙ୍କ ଆତ୍ମା ଏହି ପଶୁମାନଙ୍କ ଶରୀରରେ ପ୍ରବେଶ କରେ । ଏହି ପ୍ରଚାର ଫଳରେ ଲୋକମାନେ ପାପକାର୍ଯ୍ୟଠାରୁ ଦୂରରେ ରହି ପବିତ୍ର କାର୍ଯ୍ୟରେ ଲିପ୍ତ ରହିବାକୁ ମନ ବଳାଉଥିଲେ । ସମାଜରେ ଶାନ୍ତି, ଶୃଙ୍ଖଳା, ନ୍ୟାୟ ଆଦି ପ୍ରତିଷ୍ଠା ସମ୍ଭବ ହୋଇପାରିଥିଲା ।

ପିଥାଗୋରାସ୍ ତାଙ୍କ ପ୍ରଣୀତ ପୁସ୍ତକକୁ କେବେ ପ୍ରକାଶ କରୁ ନ ଥିଲେ, କାରଣ ତାଙ୍କର ବିଶ୍ୱାସ ଥିଲା ଯେ ତାଙ୍କ ଜ୍ଞାନକୁ ତାଙ୍କ ଛାତ୍ରଛାତ୍ରୀମାନଙ୍କଙ୍କ ବ୍ୟତୀତ ଅନ୍ୟମାନେ ପାଇବାକୁ ହକ୍‌ଦାର ନୁହନ୍ତି । ସେଥିପାଇଁ ସେ କୌଣସି ପୁସ୍ତକ ରଚନା କରି ନ ଥିଲେ । ପିଥାଗୋରାସ୍ ତାଙ୍କର ଜନୈକା ଛାତ୍ରୀ ଥିଓନୋଙ୍କୁ ବିବାହ କରିଥିଲେ । ସଂଖ୍ୟା ଗଣନାରେ ପିଥାଗୋରାସ୍‌ଙ୍କର ମଧ୍ୟ ଅବଦାନ ରହିଛି । ସେ ଦୁଇର ବର୍ଗମୂଳ ନିର୍ଣ୍ଣୟ କରିଥିଲେ । ସେ ବିଶ୍ୱାସ କରୁଥଲେ ବିଶ୍ୱର ସବୁକିଛି ସଂଖ୍ୟା ଦ୍ୱାରା ବ୍ୟକ୍ତ କରାଯାଇପାରେ ।

ଗଣିତ ଓ ଜ୍ୟାମିତି ବିଦ୍ୟା ବ୍ୟତୀତ ପିଥାଗୋରାସ୍‌ଙ୍କର ଜ୍ୟୋତିଷ ବିଜ୍ଞାନରେ ଅଶେଷ ଅବଦାନ ରହିଛି । ସନ୍ଧ୍ୟାତାରା ଓ ପାହାନ୍ତିଆ ତାରା ଯେ ପ୍ରକୃତରେ ଗୋଟିଏ ତାରା ସେ ପ୍ରଚାର କରିଥିଲେ । କୋପେରନିକସଙ୍କ ବହୁ ପୂର୍ବରୁ ସେ ବିଶ୍ୱର କେନ୍ଦ୍ର ସୂର୍ଯ୍ୟ ବୋଲି ପ୍ରକାଶ କରିଥିଲେ । ପୃଥିବୀ ସୂର୍ଯ୍ୟ ଚାରିପାଖରେ ଘୂରୁଛି ବୋଲି ସେ ମନେକରୁଥିଲେ । କିନ୍ତୁ ଲାଞ୍ଛନା ଭୟରେ ସାଧାରଣରେ ପ୍ରକାଶ କରୁ ନ ଥିଲେ । ଗ୍ରହମାନଙ୍କ ଗତିପଥ ବୃତ୍ତାକାର ବୋଲି ସେ ପ୍ରଚାର କରିଥିଲେ । ପୃଥିବୀ, ନକ୍ଷତ୍ର, ଗ୍ରହମାନେ ଘନବୃତ୍ତାକାର ବୋଲି ତାଙ୍କର ଧାରଣା ଥିଲା, କାରଣ ତାଙ୍କ ମତରେ ଗୋଲାକାରର ହିଁ ସବୁଠାରୁ ଅଧିକ ସ୍ଥାୟୀ ଆକୃତି । ସେ ଯେତେବେଳେ ଏହି ଧାରଣା ଦେଇଥିଲେ, ସେତେବେଳେ ସମସ୍ତେ ଭାବୁଥିଲେ, ପୃଥିବୀ ଥାଳି ଭଳି ଚେପ୍‌ଟା । ସେଥିପାଇଁ ସେ ବହୁତ ଲାଞ୍ଛନା ପାଇଥିଲେ ।

ପିଥାଗୋରାସ୍ ଏରିଷ୍ଟଟଲଙ୍କ ବହୁ ପୂର୍ବରୁ ଚତୁର୍ଭୂତ ତଥ୍ୟର ସୂଚନା ଦେଇଥିଲେ । ତାଙ୍କ ମତରେ ପୃଥିବୀର ଚେତନ ଓ ଅଚେତନ ବସ୍ତୁ କ୍ଷିତି, ଅପ୍, ତେଜ, ମରୁତ୍ — ଏହି ଚାରୋଟି ଭୂତ ବା ମୌଳିକ ବସ୍ତୁରୁ ଜାତ ।

ଶବ୍ଦ ବିଜ୍ଞାନକୁ ପିଥାଗୋରାସ୍‌ଙ୍କ ଦାନ ଅତୁଳନୀୟ । ସେ ବିଶ୍ୱାସ କରୁଥିଲେ, ସୁମଧୁର ସ୍ୱର ଓ ଗଣିତ ମଧ୍ୟରେ ଏକ ନିବିଡ଼ ସଂପର୍କ ଅଛି । କଥିତ ଅଛି, ପିଥାଗୋରାସ୍ ଦିନେ ଗୋଟିଏ କମାରଶାଳ ଦେଇ ଯାଉଥିଲେ । ହାତୁଡ଼ି ଦ୍ୱାରା ଯେତେବେଳେ ଲୁହା ପିଟା ହେଉଥିଲା, ସେଥିରୁ ଏକପ୍ରକାର ଶବ୍ଦ ବାହାରୁଥିଲା ଓ ସେହି ଶବ୍ଦ କେଜାଣି କାହିଁକି ପିଥାଗୋରାସ୍‌ଙ୍କୁ ଭଲ ଲାଗିଲା । ସେ

ଘରକୁ ଯାଇ ବିଭିନ୍ନ ମୋଟ ଥିବା ଲମ୍ବା ତାରକୁ ନେଇ ଟାଣ କରି ଟାଣି ବାଡ଼େଇ ସେଥିରୁ ବିଭିନ୍ନ ପ୍ରକାର ଶବ୍ଦ ଉତ୍ପନ୍ନ କଲେ । ସେହି ଶବ୍ଦରୁ ସେ ଶବ୍ଦସମ୍ବନ୍ଧୀୟ ବିଭିନ୍ନ ସୂତ୍ର ଆବିଷ୍କାର କଲେ । ସେ ଆବିଷ୍କାର କରିଥିଲେ, ଏକା ଟାଣ ଥିବା ତାରର ଅଧାକୁ ଯଦି ବାଡ଼ାଯାଏ, ଯେଉଁ ଶବ୍ଦ ସୃଷ୍ଟି ହୁଏ ସେହି ଶବ୍ଦର ପିଚ୍ ପୂରା ତାରର ପିଚ୍‌ଠାରୁ ଅଧିକ । ସମମୋଟ ବିଶିଷ୍ଟ ସରଳାନୁପାତିକ ଲମ୍ବ ବିଶିଷ୍ଟ ତଥା ସମଜୋରରେ ଟଣାଯାଇଥିବା ତାରରୁ ଉତ୍ପନ୍ନ ଶବ୍ଦ ସମଧର୍ମୀ ଓ ଏହି ସମଧର୍ମୀ ଶବ୍ଦ ଏକ ସଙ୍ଗରେ ଉତ୍ପନ୍ନ ହେଲେ କାନକୁ ଭଲ ଶୁଭେ । ସମଧର୍ମୀ ସ୍ୱର ଏକ ସଙ୍ଗରେ ସୃଷ୍ଟି ହେଲେ କାନକୁ ଖରାପ ଶୁଭେ । ସେ ସେହିଥିରୁ 'ସା ରି ଗା ମା ପା ଦା ନି ସା'ର ସର୍ବପ୍ରଥମ ସୂତ୍ରପାତ କରିଥିଲେ । ଏହି ଶବ୍ଦଗବେଷଣାରୁ ସେ ମନେ କରୁଥିଲେ ଯେ ଗ୍ରହମାନଙ୍କ ପରସ୍ପର ଦୂରତା ତଥା ଅବସ୍ଥିତିରେ ମଧ୍ୟ ସେମିତି ଏକ ସାମଞ୍ଜସ୍ୟ ରହିଛି । ପିଥାଗୋରାସ୍ ଓ ତାଙ୍କ ଶିଷ୍ୟମାନେ ପଦାର୍ଥ ବିଜ୍ଞାନ, ଜ୍ୟାମିତି, ଜ୍ୟୋତିଷ ବିଜ୍ଞାନ ବ୍ୟତୀତ ଜୀବବିଜ୍ଞାନ ଓ ଶରୀର ବିଜ୍ଞାନରେ ନାନା ଆବିଷ୍କାର କରିଥିଲେ । ଚକ୍ଷୁରେ ଥିବା ଦୃଶ୍ୟସ୍ନାୟୁ ଓ କର୍ଣ୍ଣର ଶ୍ରବଣ ନଳୀ ସମ୍ବନ୍ଧରେ କେତେକ ନୂଆ ନୂଆ ଆବିଷ୍କାର କରି ବିଜ୍ଞାନ ଜଗତକୁ ପ୍ରଦାନ କରି ଯାଇଛନ୍ତି ।

ପିଥାଗୋରାସ୍‌ଙ୍କ ଜ୍ଞାନର ସୀମା ଅସୀମ । କଥିତ ଅଛି, ସେ ମିଶରରେ ଥିଲାବେଳେ ପାରସ୍ୟର ରାଜା କେମ୍ବିସେସ୍ ମିଶର ଆକ୍ରମଣ କଲେ । ପିଥାଗୋରାସ୍‌ଙ୍କୁ ବନ୍ଦୀ କରି ସେ ବେବିଲୋନକୁ ନେଇଗଲେ । ସେଠାରେ ସେ ପାରସ୍ୟ ଓ କେଲଡିଆନ୍‌ସ ପଣ୍ଡିତମାନଙ୍କ ସହିତ ତର୍କ ପ୍ରତିଯୋଗିତାରେ ଯୋଗଦେଲେ । ସେ ସେମାନଙ୍କୁ ତର୍କରେ ପରାସ୍ତ କଲାରୁ ରାଜା ଖୁସୀ ହୋଇ ତାଙ୍କୁ

ଖଲାସ କରିଦେଲେ । ସେ ସେଠାରୁ ଖଲାସ ହୋଇ ଦକ୍ଷିଣ ଇଟାଲୀର କ୍ରୋଟନା ସହରରେ ଏକ ଶିକ୍ଷା କେନ୍ଦ୍ର ଖୋଲିଲେ । ସେଠାରେ ପ୍ରାୟ ୩୦୦ ଜଣ ଛାତ୍ର ଅଧ୍ୟୟନ କରୁଥିଲେ । ଥରେ ସାଇଲେନ ନାମକ ଜଣୈକ ଧନୀଛାତ୍ର ସେଠାକୁ ଅଧ୍ୟୟନ ପାଇଁ ଆସିଥିଲେ । କିନ୍ତୁ ପଢ଼ିବାକୁ ସ୍ଥାନ ନ ପାଇବାରୁ ସେ କ୍ରୋଟନା ସହରର ଅଧିବାସୀଙ୍କୁ ତାଙ୍କ ବିରୋଧରେ ମତାଇଲେ । ସେମାନେ ସମସ୍ତେ ପିଥାଗୋରାସ୍‌ଙ୍କ ବିରୋଧରେ ଉଠିବାରୁ ପିଥାଗୋରାସ୍ କ୍ରୋଟନା ଛାଡ଼ି ପଳାଇଲେ ।

ପିଥାଗୋରାସ୍ ସଂପ୍ରଦାୟ ରାଜନୀତିଠାରୁ ଦୂରରେ ରହୁଥିଲେ । ତଥାପି ସେମାନଙ୍କ ଧର୍ମ ପ୍ରଚାର ତାତ୍‌କାଳିକ ରାଜନୀତି ଉପରେ ପ୍ରଭାବ ପକାଉଥିଲା । ସେମାନେ କେତେ ରାଜନୀତିଜ୍ଞଙ୍କୁ ବିରୋଧ କରି ଆଉ କେତେକଙ୍କ ସହିତ ସହଯୋଗ କରୁଥିବାରୁ ସେମାନେ ଅପ୍ରିୟ ହୋଇ ପଡ଼ିଥିଲେ । ସେମାନଙ୍କ ବିରୋଧୀମାନେ ଶାସନ କ୍ଷମତା ହାତକୁ ନେଲାକ୍ଷଣି ସେ ଓ ତାଙ୍କର ସଂପ୍ରଦାୟ କ୍ରୋଟନା ଛାଡ଼ି ମେଟାପୋଣ୍ଟମାକୁ ପଳାଇଲେ । ସେଠାରେ ପ୍ରାୟ ଦଶବର୍ଷ ରହିବା ପରେ ଖ୍ରୀ:ପୂ: ୫୦୬ ମସିହାରେ ଏକ ରାଜନୀତିବାଦୀ ଦଳ ହାତରେ ପ୍ରାଣ ଦେଲେ ।

## ଚତୁର୍ଥ ଅଧ୍ୟାୟ

# ପାଶ୍ଚାତ୍ୟ ପରମାଣୁ ବିଜ୍ଞାନର ପ୍ରତିଷ୍ଠାତା ଡିମୋକ୍ରିଟସ୍



ଡିମୋକ୍ରିଟସ୍

ଗ୍ରୀସ୍ ଦେଶରେ ଯେଉଁସବୁ ଦାର୍ଶନିକ ଜନ୍ମଗ୍ରହଣ କରି ବିଜ୍ଞାନର ପ୍ରସାର ଦିଗରେ ଯଥେଷ୍ଟ କାର୍ଯ୍ୟକରି ଯାଇଛନ୍ତି, ସେମାନଙ୍କ ମଧ୍ୟରେ ଡିମୋକ୍ରିଟସଙ୍କ ନାମ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ସେ ଖ୍ରୀ:ପୂ: ପଞ୍ଚମ ଶତାବ୍ଦୀରେ ଖ୍ରୀ:ପୂ: ୪୫୦ ମସିହା ପାଖାପାଖି ସମୟରେ ଜନ୍ମ ପରିଗ୍ରହ କରିଥିଲେ । ସେ ଖ୍ରୀ:ପୂ: ପଞ୍ଚମ ଶତାବ୍ଦୀର ଶେଷ ଆଡ଼କୁ ଓ ଚତୁର୍ଥ ଶତାବ୍ଦୀର ପ୍ରଥମ ପାଦରେ ଦର୍ଶନଶାସ୍ତ୍ରରେ ଖୁବ୍ ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ ମଧ୍ୟ ଡିମୋକ୍ରିଟସ୍ ବିଜ୍ଞାନରେ କେତେକ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର କରିଥିଲେ । ବଡ଼ ବଡ଼ ବିଚିତ୍ର, ଏତେ ବଡ଼ ଦାର୍ଶନିକ ତଥା ବୈଜ୍ଞାନିକ, ତାଙ୍କର ଜୀବନ କାହାଣୀ ସମ୍ବନ୍ଧରେ ବେଶୀ କିଛି ଜଣା ନାହିଁ । ତାଙ୍କର ପ୍ରକୃତ ଜନ୍ମ ମୃତ୍ୟୁ ତାରିଖ ଠିକ୍ ଭାବରେ କେହି ଜାଣନ୍ତି ନାହିଁ । ତେବେ ତାଙ୍କ ପରବର୍ତ୍ତୀ କେତେକ ଦାର୍ଶନିକଙ୍କ ଲେଖାରୁ ତାଙ୍କ ସମ୍ବନ୍ଧରେ ଯାହା କିଛି ଜାଣିହୁଏ । ବିଶ୍ୱ ସୃଷ୍ଟି

ସମ୍ବନ୍ଧରେ ତାଙ୍କର ଏକ ନିର୍ଦ୍ଦିଷ୍ଟ ମତ ଥିଲା ଓ ମଣିଷର ଦୁର୍ବଳତାକୁ ସେ ହସରେ ଉଡ଼ାଇ ଦେଉଥିଲେ, ସେଥିପାଇଁ ତାଙ୍କୁ 'ହର୍ଷୋତ୍‌ଫୁଲ୍ଲ ଦାର୍ଶନିକ' ବୋଲି କୁହାଯାଉଥିଲା ।

ଡିମୋକ୍ରିଟସ୍ ସମ୍ଭବତଃ ଗ୍ରୀସ୍‌ଦେଶରେ ଥେସ ରାଜ୍ୟସ୍ଥ ଆବ୍‌ଡେରାଠାରେ ବା ମିଲିଟସ୍‌ଠାରେ ଜନ୍ମ ପରିଗ୍ରହ କରିଥିଲେ ।

ସେ ନିଜ ଦାର୍ଶନିକ ଜୀବନ ଆରମ୍ଭ କରିବା ପୂର୍ବରୁ ସେ ପୂର୍ବ-ପ୍ରାନ୍ତରେ ଥିବା ସଭ୍ୟ ଦେଶମାନଙ୍କରେ ପଦଯାତ୍ରା କରିଥିଲେ । ସେ ତତ୍‌କାଳୀନ ସଭ୍ୟଦେଶ ମିଶରରେ ଗଣିତବିଦ୍ୟା ଓ ପ୍ରାକୃତିକ ବିଜ୍ଞାନ ସମ୍ବନ୍ଧରେ ଜ୍ଞାନ ଅର୍ଜ୍ଜନ କରିଥିଲେ । ତାଙ୍କ ଗୁରୁଦେବ ହେଉଛନ୍ତି ସୁପ୍ରସିଦ୍ଧ ଗ୍ରୀକ୍ ଦାର୍ଶନିକ ଲୁସିପସ୍, ଯାହାଙ୍କ ବିଷୟରେ ମଧ୍ୟ ବିଶେଷ କିଛି ଜଣା ନାହିଁ । ଡିମୋକ୍ରିଟସ୍ ଯେଉଁ ପରମାଣୁ ତଥ୍ୟ ପାଇଁ ପ୍ରସିଦ୍ଧ, ସେହି ପରମାଣୁ ତଥ୍ୟ ଲୁସିପସ୍‌ଙ୍କ ମସ୍ତିଷ୍କରୁ ବାହାରିଥିଲା । ତେବେ ଡିମୋକ୍ରିଟସ୍ ସେହି ତଥ୍ୟର ପ୍ରସାର ଓ ବ୍ୟାଖ୍ୟା କରିଥିବାରୁ ଏହି ତଥ୍ୟର ଜନକ ଭାବରେ ତାଙ୍କୁ ସମ୍ମାନ ଦିଆଯାଏ । ପରମାଣୁ ତଥ୍ୟକୁ ଲୋକପ୍ରିୟ କରିବା ପାଇଁ ଡିମୋକ୍ରିଟସ୍ ଆପ୍ରାଣ ଚେଷ୍ଟା କରିଥିଲେ । କିନ୍ତୁ ତାଙ୍କ ସମସାମୟିକ ଦାର୍ଶନିକ, ଜ୍ଞାନୀ, ପଣ୍ଡିତ ଲୋକେ ଏହି ତଥ୍ୟର ଗୁରୁତ୍ୱ ଉପଲବ୍‌ଧି କରି ନ ପାରିବାରୁ ଏହା ଡିମୋକ୍ରିଟସ୍‌ଙ୍କ ପରେ ଲୋପ ପାଇଗଲା ।

ଡିମୋକ୍ରିଟସ୍‌ଙ୍କ ମତରେ ଏହି ବିଶ୍ୱ ପରମାଣୁ ଓ ଶୂନ୍ୟ ଦ୍ୱାରା ପୂର୍ଣ୍ଣ । ଏହି ପରମାଣୁ ସବୁଠାରୁ ଛୋଟ କଣିକା, ଯାହାକୁ ଆଉ ଭାଗ ଭାଗ କରିବା ସମ୍ଭବ ନୁହେଁ । ଏହି ପରମାଣୁଗୁଡ଼ିକ ଶୂନ୍ୟ ଭିତରେ ଅବସ୍ଥାନ କରି ବିଶ୍ୱ ସୃଷ୍ଟି କରିଛନ୍ତି । ସବୁ ବସ୍ତୁ ପରମାଣୁରୁ ତିଆରି । ଗୋଟିଏ ବସ୍ତୁ ଆଉ ଏକ ବସ୍ତୁଠାରୁ ଅଲଗା, ଏହା

ମୂଳରେ ରହିଛି ପରମାଣୁର ଆକାର । ପରମାଣୁର ଆକାର ଅଲଗା ଅଲଗା ହୋଇଥିବାରୁ ଗୋଟିଏ ବସ୍ତୁ ଅନ୍ୟ ବସ୍ତୁଠାରୁ ଅଲଗା । ସେ ମନେ କରୁଥିଲେ ଜଳର ପରମାଣୁ ଗୋଲାକାର ଓ ମସୃଣ, କିନ୍ତୁ ଲୁହା ଧାତୁର ପରମାଣୁ ଅମସୃଣ ଓ ଆବୁଡ଼ା ଖାବୁଡ଼ା । ସେଥିପାଇଁ ଗୋଟିଏ ଜଳ ପରମାଣୁ ଆଉ ଏକ ଜଳ ପରମାଣୁ ଉପରେ ଗଡ଼ିଯାଏ, କିନ୍ତୁ ଲୁହା ପରମାଣୁ ତାହା ନ କରିପାରି ଅନ୍ୟ ପରମାଣୁ ଉପରେ ପଡ଼ିରହେ । ଜଳ କାହିଁକି ପଡ଼ିଗଲେ ଗଡ଼ିଯାଏ, ଏହା ତାହାର କାରଣ ।

ଡିମୋକ୍ରିଟସ୍ ବିଶ୍ୱାସ କରୁଥିଲେ ନାନାପ୍ରକାର ସୂତ୍ର ଓ ପ୍ରକୃତି ବଳରେ ଏହି ବିଶ୍ୱର ବିଭିନ୍ନ ସଦସ୍ୟ, ଗ୍ରହ, ନକ୍ଷତ୍ର ଆଦି ଆତଯାତ ହୁଅନ୍ତି । ଏହି ସୂତ୍ରଗୁଡ଼ିକ ପରମାଣୁର ପ୍ରକୃତିରୁ ଜାତ । ପରମାଣୁର କମ୍ପନରୁ ବିଶ୍ୱର ସୃଷ୍ଟି । ଏହି କମ୍ପନ ଫଳରେ ବିଭିନ୍ନ ପରମାଣୁ ଅନ୍ୟ ପରମାଣୁ ସହିତ ସଂଶ୍ଳିଷ୍ଟ ହୋଇ ବଡ଼ ବଡ଼ କଣିକା ଓ କଣିକାରୁ ବଡ଼ ବଡ଼ ବସ୍ତୁଖଣ୍ଡ ସୃଷ୍ଟି ହୁଏ । ଏହି ବସ୍ତୁ ଖଣ୍ଡହିଁ ଆମ ପୃଥିବୀ ସୃଷ୍ଟି କରିଛନ୍ତି । ଡିମୋକ୍ରିଟସ୍ ପ୍ରଚାର କରୁଥିଲେ ଶୂନ୍ୟରୁ ବସ୍ତୁ ସୃଷ୍ଟି ହୋଇପାରେ ନାହିଁ ବା ବସ୍ତୁ ଅନ୍ତର୍ହିତ ହୋଇପାରେ ନାହିଁ । ଏହି ମତ ପ୍ରକାରାନ୍ତରେ ଆଧୁନିକ 'ବସ୍ତୁର ଅବିନଶ୍ୱରତା' ତଥ୍ୟର ପୂର୍ବାଭାସ ।

ମଣିଷର ଶରୀର ସମ୍ବନ୍ଧରେ ମତବ୍ୟକ୍ତ କରିବାକୁ ଯାଇ ଡିମୋକ୍ରିଟସ୍ କହନ୍ତି ଶରୀର ଭିତରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅଂଶ ହେଉଛି ଆତ୍ମା । ଏହା ସାରା ଶରୀରକୁ ଘେରି ରହିଛି । ଶରୀର ଓ ଆତ୍ମା ଅଲଗା ଅଲଗା । ଶରୀର ଶରୀର-ପରମାଣୁ ଦ୍ୱାରା ଗଠିତ ଓ ଆତ୍ମା ଆତ୍ମା-ପରମାଣୁ ଦ୍ୱାରା ଗଠିତ । ପ୍ରତ୍ୟେକ ଦୁଇଟି ଶରୀର-ପରମାଣୁ ମଧ୍ୟରେ ଗୋଟିଏ ଗତିଶୀଳ ମସୃଣ ଗୋଲାକାର ଆତ୍ମା-ପରମାଣୁ ଅବସ୍ଥିତ ଥାଇ ଆମ ଶରୀର ସୃଷ୍ଟି ହୋଇଛି ।

### ପଞ୍ଚମ ଅଧ୍ୟାୟ

# ଆଧୁନିକ ଡାକ୍ତରୀବିଦ୍ୟାର ପ୍ରତିଷ୍ଠାତା ହିପୋକ୍ରେଟାସ୍

ରୋଗ ନିରାକରଣ ପାଇଁ ଯେତେଗୋଟି ଚିକିତ୍ସା ପଦ୍ଧତି ରହିଛି, ସେହି ସବୁଥିରୁ ଅଧିକ ଉନ୍ନତ ଓ ଆଧୁନିକ ହେଉଛି ଏଲୋପାଥି । ଏଲୋପାଥି ବ୍ୟତୀତ ହୋମିଓପାଥି, କବିରାଜୀ, ୟୁନାନୀ ଆଦି ଆଉ କେତେକ ଚିକିତ୍ସା ପଦ୍ଧତି ରୋଗ ନିରାକରଣରେ ସାହାଯ୍ୟ କରେ । କିନ୍ତୁ ସେସବୁ ଏଲୋପାଥି ତୁଳନାରେ ଏତେ ଉନ୍ନତ ନୁହେଁ ବା ଏସବୁକୁ ଏଲୋପାଥି ଭଳି ବହୁ ଅଧିକ ଲୋକ ଅନୁସରଣ କରନ୍ତି ନାହିଁ । ଏହି ଏଲୋପାଥିକୁ ମଧ୍ୟ ଆମେ ଆଧୁନିକ ଡାକ୍ତରୀବିଦ୍ୟା ବୋଲି କହୁଁ । ଏହି ଡାକ୍ତରୀ ବିଦ୍ୟାର ପ୍ରତିଷ୍ଠାତା ହେଉଛନ୍ତି ଗ୍ରୀକ୍ ଚିକିତ୍ସକ ହିପୋକ୍ରେଟାସ୍ । ସେଥିପାଇଁ ତାଙ୍କୁ ଆଧୁନିକ ଡାକ୍ତରୀବିଦ୍ୟାର ଜନକ ବୋଲି କୁହାଯାଏ ।



ଆଧୁନିକ ଡାକ୍ତରୀ ବିଦ୍ୟାର ପ୍ରତୀକ

ହିପୋକ୍ରେଟାସ୍ ଖ୍ରୀଷ୍ଟପୂର୍ବ ୪୬୦ ମସିହାରେ ଗ୍ରୀସ୍ ଦେଶର କସ୍ ଦ୍ୱୀପରେ ଜନ୍ମଗ୍ରହଣ କରିଥିଲେ । ସେହି ଦ୍ୱୀପରେ ଗ୍ରୀସ୍ ଦେଶର ସୁବିଖ୍ୟାତ ମନ୍ଦିର ଏସକୁଲାପିଅସ ଅବସ୍ଥିତ ଓ ସେହି ମନ୍ଦିରରେ



ହିପୋକ୍ରେଟାସ୍

ହିପୋକ୍ରେଟାସ୍‌ଙ୍କ ପିତା ହିରାକ୍ଲିଡେସ୍ ପ୍ରଧାନ ପୂଜକ ଥିଲେ । ହିପୋକ୍ରେଟାସ୍‌ଙ୍କ ଜନ୍ମ ପର୍ଯ୍ୟନ୍ତ ଗ୍ରୀସ୍‌ରେ ରୋଗ ଚିକିତ୍ସା ଏସକୁଲାପିଅସ ମନ୍ଦିରରେ ପୂଜକମାନେ ହିଁ କରୁଥିଲେ । ଏସକୁଲାପିଅସ ହେଉଛନ୍ତି ଗ୍ରୀକ୍ ଦେବତା, ଯାହାଙ୍କୁ ପୂଜା କଲେ ରୋଗ ଦୂର ହୁଏ । ଏହି ଦେବତାଙ୍କର ଶକ୍ତି ଏତେ ମହାନ୍ ଥିଲା ଯେ ସେ ମୃତ ଲୋକଙ୍କୁ ଜୀବଦାନ ଦେଇ ପାରୁଥିଲେ । ସେ ସମୟରେ ଲୋକଙ୍କ ଧାରଣା ଥିଲା ଦେବତା କୁପିତ ହେଲେ ରୋଗ ହୁଏ ।

ଦେବତାମାନଙ୍କୁ ପୂଜା କଲେ, ଭୋଗ ସାମଗ୍ରୀ ଦେଲେ ଦେବତାମାନେ ସନ୍ତୁଷ୍ଟ ହୋଇ ରୋଗ ଉପଶମ କରାନ୍ତି । ସେଥିପାଇଁ ବହୁ ରୋଗୀ ଏସକ୍ଲୁଲାପିଅସ ମନ୍ଦିରରେ ଭଲ ହେବା ଆଶାରେ ଆସି ଅଧା ପଡ଼ନ୍ତି । କଥିତ ଅଛି ବହୁ ରୋଗୀ ଭଲହୋଇ ଘରକୁ ଫେରନ୍ତି । ପୂଜକମାନେ ବେଳେବେଳେ ଦୈବୀଶକ୍ତିରୁ ପ୍ରସ୍ତୁତ ଔଷଧ ମଲମ ଆଦି ଦେଇ ରୋଗ ଭଲ ହେବାରେ ସାହାଯ୍ୟ କରିଥାନ୍ତି ।

ହିପୋକ୍ରେଟାସ୍ ପିଲାବେଳେ ଏହିଭଳି ରୋଗ ଚିକିତ୍ସା ଦେଖି କୌତୂହଳୀ ହୋଇ ପଡ଼ିଥିଲେ । ପର ଜୀବନରେ ସେ ସିଦ୍ଧାନ୍ତରେ ପହଞ୍ଚିଥିଲେ ଯେ ଦେବତାମାନଙ୍କର ରୋଗ ଭଲ କରିବାର ଶକ୍ତି ନାହିଁ । ଯେଉଁମାନେ ମନ୍ଦିରରୁ ଭଲ ହୋଇ ଘରକୁ ଫେରୁଛନ୍ତି, ସେମାନେ ନିଜ ଶରୀରର ରୋଗ-ପ୍ରତିରୋଧୀ କ୍ଷମତା ବଳରେ ଆପେ ଆପେ ଭଲ ହେଉଛନ୍ତି । ତେବେ ହିପୋକ୍ରେଟାସ୍ ଏହା ପ୍ରଚାର ନ କରି ନିଜ ଭିତରେ ରଖିଥିଲେ । ଦେବତାମାନଙ୍କୁ ସମାଲୋଚନା କରିବା ଅନୁଚିତ ବୋଲି ସେ ଭାବୁଥିଲେ ।

ହିପୋକ୍ରେଟାସ୍ ଗ୍ରୀସ୍‌ର ପ୍ରସିଦ୍ଧ ଦାର୍ଶନିକ ଡିମୋକ୍ରିଟସ୍‌ଙ୍କ ଅଧୀନରେ ପ୍ରଥମେ ଶିକ୍ଷା ପାଇଥିଲେ । ଡିମୋକ୍ରିଟସ୍ ବହୁ ଦେଶ ପର୍ଯ୍ୟଟନ କରି ପ୍ରାକୃତିକ ବିଜ୍ଞାନ, ଗଣିତ, ଦର୍ଶନ ଆଦିରେ ଅସାଧାରଣ ବ୍ୟୁତ୍ପତ୍ତି ଲାଭ କରିଥିଲେ । ଏହିଭଳି ଏକ ଗୁରୁଙ୍କ ଅଧୀନରେ ଶିକ୍ଷା ପାଇ ହିପୋକ୍ରେଟାସ୍ ନିଜକୁ ଗୌରବାନ୍ୱିତ ମନେ କରୁଥିଲେ । ସେ ଶିକ୍ଷା ସମାପ୍ତ ପରେ ନିଜ ଗୁରୁ ଡିମୋକ୍ରିଟସ୍‌ଙ୍କ ଭଳି ବହୁ ଦେଶ ପର୍ଯ୍ୟଟନ କରି ବହୁ ଶିକ୍ଷାକେନ୍ଦ୍ରରେ ଯୋଗ ଦେଇଥିଲେ । ଚିକିତ୍ସା ଶାସ୍ତ୍ର ସେ ପ୍ରଥମେ ନିଜ ପିତାଙ୍କ ଠାରୁ



ପୁରାତନ ଗ୍ରୀସ୍‌ରେ ରୋଗ ଚିକିତ୍ସା

ପଢ଼ିଥିଲେ, ପରେ ବିଖ୍ୟାତ ଚିକିତ୍ସକ ହିରୋଡିକ୍‌ସଙ୍କ ଅଧୀନରେ ପଢ଼ିଲେ । ଗ୍ରୀସ୍ ଦେଶର ରାଜଧାନୀ ଏଥେନ୍‌ସ ନଗରୀରେ ସେ ବହୁଦିନ ରହି ଚିକିତ୍ସାଶାସ୍ତ୍ରରେ ଉଚ୍ଚତର ଶିକ୍ଷା ଓ ଅଧ୍ୟୟନ କରିଥିଲେ । ସେ ସମୟରେ ଗ୍ରୀସ୍ ଦେଶର ଚିକିତ୍ସା ବିଜ୍ଞାନର ଛାତ୍ରମାନେ ଶବ ବ୍ୟବଚ୍ଛେଦ କରୁ ନ ଥିଲେ । ଶବ ବ୍ୟବଚ୍ଛେଦ ନ କରି ସେମାନେ ଶରୀର ସମ୍ପର୍କରେ ଯେଉଁ ଜ୍ଞାନ ଅର୍ଜନ କରୁଥିଲେ, ତାହା ସେତେ ଉଚ୍ଚକୋଟୀର ହେଉ ନ ଥିଲା, ନ ହେବା ମଧ୍ୟ ସ୍ୱାଭାବିକ । ତେବେ ହାଡ଼ ଭାଙ୍ଗିଗଲେ କେମିତି ଯୋଡ଼ିହେବ, କେମିତି କାଠ, ପଟା ଓ ପଟି ଦେଇ ବାନ୍ଧିଦେଲେ ହାଡ଼ ମନକୁ ମନ

ଯୋଡ଼ି ହୋଇଯିବ, ଏ ଧାରଣା ସେମାନଙ୍କର ପରିଷ୍କାର ଥିଲା । ଏହି ଭଙ୍ଗାହାଡ଼ ଯୋଡ଼ିବା ଦିଗରେ ହିପୋକ୍ରେଟାସ୍ ଯେଉଁ ପଦ୍ଧତିମାନ ଦେଇ ଯାଇଛନ୍ତି, ତାହା ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ତା' ଛଡ଼ା କ୍ଷତ ଚିକିତ୍ସା ଓ ଅସ୍ତ୍ରୋପଚାର ସମ୍ପର୍କରେ ସେ ଯେଉଁ ନିର୍ଦ୍ଦେଶମାନ ଦେଇ ଯାଇଛନ୍ତି, ତାହା ଆଧୁନିକ ନିର୍ଦ୍ଦେଶଠାରୁ କୌଣସି ଗୁଣରେ କମ୍ ନୁହେଁ । ଅସ୍ତ୍ରୋପଚାର ଯନ୍ତ୍ରପାତି କିଭଳି ପ୍ରସ୍ତୁତ ହେବ, ଅସ୍ତ୍ରୋପଚାର ଘର କେମିତି ଶୋଧିତ ହେବ, ଅସ୍ତ୍ରୋପଚାର କରିବା ପୂର୍ବରୁ ରୋଗୀକୁ କେମିତି ପ୍ରସ୍ତୁତ କରାଇବ, ଅସ୍ତ୍ରୋପଚାର ପରେ ରୋଗୀର କେମିତି ଚିକିତ୍ସା କରିବ, ରୋଗୀର ପଥ୍ୟ ଓ ପରିଚର୍ଯ୍ୟା କେମିତି ହେବା ଦରକାର, ସେ ସମ୍ପର୍କରେ ହିପୋକ୍ରେଟାସ୍‌ଙ୍କ ନିର୍ଦ୍ଦେଶ ଅତି ଉଚ୍ଚକୋଟୀର ।

ହିପୋକ୍ରେଟାସ୍‌ଙ୍କ ରୋଗ ଚିକିତ୍ସା ଅତି ଉନ୍ନତ ଧରଣର । ରୋଗୀର ରୋଗ ଚିକିତ୍ସା କରିବା ପୂର୍ବରୁ ରୋଗୀର ପାରିବାରିକ ଇତିହାସ, ବେଉସା, ପ୍ରତିଦିନର କାର୍ଯ୍ୟ, ତାର ପରିବେଶ ଆଦି କଥା ବୁଝି ରୋଗ ଚିକିତ୍ସା କରୁଥିଲେ । ତାଙ୍କ ମତରେ ଏସବୁ କଲେ ରୋଗ ନିର୍ଣ୍ଣୟ କରିବା ସହଜତର ହୁଏ । ଡାହାଣୀ ବା ଭୂତ ମାଡ଼ିବସିବାକୁ ହିପୋକ୍ରେଟାସ୍ ଶରୀରର ଏକ ରୋଗ ବୋଲି ଭାବୁଥିଲେ । ଡାହାଣୀ ଓ ଭୂତ ଆଦିକୁ ସେ ବିଶ୍ୱାସ କରୁ ନ ଥିଲେ ।

ଚିକିତ୍ସକ' ହିସାବରେ ହିପୋକ୍ରେଟାସ୍‌ଙ୍କ ପ୍ରସିଦ୍ଧି ଏତେ ବ୍ୟାପି ଯାଇଥିଲା ଯେ ପାରସ୍ୟର ରାଜା ଆର୍ଟେକ୍‌ସିରାକ୍‌ସେସ୍ ତାଙ୍କୁ ପ୍ରଚୁର ଧନ ଦେଇ ନିମନ୍ତ୍ରଣ କରିଥିଲେ ତାଙ୍କ ରାଜ୍ୟକୁ ଆସି ତାଙ୍କ ସୈନ୍ୟମାନଙ୍କ ଭିତରେ ଦେଖା ଦେଇଥିବା ମହାମାରୀକୁ ଚିକିତ୍ସା

କରିବାପାଇଁ । ସେଥିପାଇଁ ରାଜା ତାଙ୍କର ଧନର ଭଣ୍ଡାର ହିପୋକ୍ରେଟାସ୍‌ଙ୍କ ପାଇଁ ଉନ୍ମୁକ୍ତ କରିଦେଇଥିଲେ । ସେତେବେଳେ ପାରସ୍ୟ ଓ ଗ୍ରୀସ୍ ଭିତରେ ଯୁଦ୍ଧ ଲାଗିଥାଏ । ସେ ରାଜାଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ଲେଖିଲେ ଯେ ସେ ତାଙ୍କ ଦେଶର ଶତ୍ରୁର ଜୀବନ ରକ୍ଷା କରିବା ପାଇଁ ତାଙ୍କ ଦେଶକୁ ଯିବେ ନାହିଁ । ଫ୍ରାନ୍ସ ରାଜଧାନୀ ପାରିସ୍ ସହରରେ ଥିବା ମେଡିକାଲ ସ୍କୁଲରେ ଏହି କଥାକୁ ନେଇ ଏକ ସୁନ୍ଦର ଚିତ୍ର ରଖାଯାଇଛି । ସ୍ୱଦେଶପ୍ରୀତି ପାଇଁ ହିପୋକ୍ରେଟାସ୍ ଖୁବ୍ ସମ୍ମାନ ପାଉଥିଲେ । ଚିକିତ୍ସକ ହିସାବରେ ସେ ଅଦ୍ୱିତୀୟ । ଖ୍ରୀ:ପୂ: ୪୩୦ରୁ ୪୨୫ ମସିହା ଭିତରେ ଗ୍ରୀସ୍ ରାଜଧାନୀ ଏଥେନ୍ସରେ ଯେଉଁ ରୋଗ ଦେଖା ଦେଇଥିଲା ହିପୋକ୍ରେଟାସ୍‌ଙ୍କ ଚିକିତ୍ସା ଯୋଗୁଁ ସହରର ଅଧିବାସୀ ରକ୍ଷା ପାଇ ପାରିଥିଲେ ।



ଗବେଷଣାଗାରରେ ପୁରାତନ ଗ୍ରୀକ୍ ଚିକିତ୍ସାବିତ୍

ହିପୋକ୍ରେଟାସ୍‌ଙ୍କ ଲିଖିତ ଚିକିତ୍ସାଶାସ୍ତ୍ର ଖୁବ୍ ବିରାଟ, ସତେଇଶ ଖଣ୍ଡରେ ବିଭକ୍ତ । ଖ୍ରୀ:ପୂ: ତୃତୀୟ ଶତାବ୍ଦୀରେ ତାଙ୍କ ରଚନାବଳୀକୁ ତାଙ୍କ ଛାତ୍ରମାନେ ସଂଗ୍ରହ କରି ଆଲେକ୍‌ଜାଣ୍ଡ୍ରିଆ ସହରର ବିରାଟ ପୁସ୍ତକାଗାରରେ ରଖାଇଥିଲେ । ତାଙ୍କର ସେହି ଚିକିତ୍ସା ଶାସ୍ତ୍ର ପ୍ରାୟ ପାଞ୍ଚଶ ବର୍ଷଧରି ସେକାଳର ଚିକିତ୍ସକମାନଙ୍କୁ ରୋଗ ନିର୍ଣ୍ଣୟ ପାଇଁ ବାଟ ଦେଖାଇ ଆସୁଥିଲା । ହିପୋକ୍ରେଟାସ୍ ଅସ୍ତ୍ରୋପଚାରକମାନଙ୍କୁ ସାଧାରଣ ଚିକିତ୍ସକଙ୍କଠାରୁ ଉଚ୍ଚତର ଆସନ ଦେଉଥିଲେ ।

ରୋଗ ନିର୍ଣ୍ଣୟପାଇଁ ହିପୋକ୍ରେଟାସ୍ ଯେଉଁସବୁ ପଦ୍ଧତି ଅବଲମ୍ବନ କରୁଥିଲେ ସେଥିଭିତରୁ କେତେକ ଏବେବି ଅନୁସୃତ ହେଉଅଛି । ରୋଗୀର ଆଖି, ଚର୍ମ, ଉତ୍ତାପ, କ୍ଷୁଧା, ଝାଡ଼ା ଆଦି କିପରି ଅଛି, ଆଗ ପର୍ଯ୍ୟବେକ୍ଷଣ କରିବା ଦରକାର । ରୋଗୀର ପ୍ରତିଦିନର ରେକର୍ଡ ଚିକିତ୍ସକମାନେ ରଖିବା ଉଚିତ । ଜଳବାୟୁ ଓ ଋତୁ ପରିବର୍ତ୍ତନରୁ ଶରୀର ଉପରେ କି ପ୍ରଭାବ ଥାଏ, ସେ ଜାଣିଥିଲେ । ସେ କହୁଥିଲେ ରୋଗୀକୁ ସର୍ବଦା ଉତ୍ସାହ ଦେବା ଉଚିତ । ରୋଗୀର କି ରୋଗ ହୋଇଛି ଓ ତାହାର ଚିକିତ୍ସା କେମିତି ହେବାକୁ ଯାଉଛି ରୋଗୀକୁ ବୁଝାଇଦେବା ଦରକାର । ରୋଗୀର ନିଜ ଚିକିତ୍ସା ଉପରେ ବିଶ୍ୱାସ ଆସିଲେ ରୋଗ ଭଲ ହେବା ସହଜତର ହୋଇଯାଏ ।

ସାଧାରଣତଃ ସ୍ୱାସ୍ଥ୍ୟ ସମ୍ବନ୍ଧରେ ହିପୋକ୍ରେଟାସ୍‌ଙ୍କର ଯେଉଁସବୁ ଧାରଣା ଆଜକୁ ଅଢ଼େଇହଜାର ବର୍ଷ ତଳେ ଥିଲା, ଏବେବି ତାହା ସତ୍ୟ ବୋଲି ପ୍ରତିପାଦିତ ହୋଇଅଛି । ଏବେ ବି ତାହା ଅପରିବର୍ତ୍ତିତ ହୋଇ ରହିଛି । ସେହି ଧାରଣାଗୁଡ଼ିକ ହେଲା –

(୧) ଯେଉଁମାନେ ଅଧିକ ମୋଟା ସେମାନେ ଅପେକ୍ଷାକୃତ ଶୀଘ୍ର ମରନ୍ତି ଓ ଯେଉଁମାନେ ପତଳା, ସେମାନେ ମୋଟା ଲୋକଙ୍କଠାରୁ ଅଧିକ ଡେରିରେ ମରନ୍ତି ।

(୨) ବୁଢ଼ାମାନେ ଟୋକାମାନଙ୍କ ଅପେକ୍ଷା କମ୍ ଖାଦ୍ୟ ଦରକାର କରନ୍ତି ।

(୩) ଶୀତଋତୁରେ ବେଶୀ ଓ ଗ୍ରୀଷ୍ମଋତୁରେ କମ୍ ଖାଦ୍ୟ ଖାଇବା ବିଧେୟ ।

(୪) ପତଳା ଲୋକମାନେ ଚର୍ବି ଥିବା ଖାଦ୍ୟ ଖାଇବା ଉଚିତ ଓ ମୋଟା ଲୋକମାନେ ଚର୍ବିରହିତ ଖାଦ୍ୟ ଖାଇବା ବାଞ୍ଛନୀୟ ।

(୫) ଥଣ୍ଡା, ଚିନ୍ତା ଓ ଥକ୍କା ମେଣ୍ଟାଇବା ପାଇଁ ମଦ ସହିତ ସମାନ ପରିମାଣର ଜଳ ମିଶାଇ ପାନ କଲେ ଭଲ ଫଳ ଦିଏ ।

ହିପୋକ୍ରେଟାସ୍ ଗ୍ରୀସ୍ ଦେଶସ୍ଥ ମେସିଡୋନିଆ ରାଜ୍ୟର ରାଜା ପେର୍ଡିକସ୍‌ଙ୍କ ଏକ ବିଚିତ୍ର ସ୍ନାୟୁରୋଗର ଚିକିତ୍ସା କରି ତାଙ୍କୁ ଭଲ କରି ଦେଇଥିଲେ । ସେ ଏହି ରୋଗର ଗୁପ୍ତ କାରଣ ନିର୍ଣ୍ଣୟ କରିସାରିବା ପରେ ଯାଇ ରୋଗ ଚିକିତ୍ସା କରିଥିଲେ । ରାଜା ପେର୍ଡିକାସ୍ ତାଙ୍କ ପିତାଙ୍କ ସୁନ୍ଦରୀ ରକ୍ଷିତା ସ୍ତ୍ରୀର ପ୍ରେମରେ ପଡ଼ି ଏହି ରୋଗରେ ପୀଡ଼ିତ ହୋଇଥିଲେ । ତାଙ୍କ ଗୁରୁ ଦାର୍ଶନିକ ଡିମୋକ୍ରେଟାସ୍ ଏକ ପାଗଳା ଲୋକ ବୋଲି ଲୋକେ ତାଙ୍କଠାରେ ଆସି ଆପତ୍ତି କଲେ । ସାଧାରଣ ଲୋକଙ୍କ ଅନୁରୋଧରେ ସେ ତାଙ୍କୁ ଚିକିତ୍ସା କରିବାକୁ ଯାଇଥିଲେ । ସେ ଡିମୋକ୍ରେଟାସ୍‌ଙ୍କୁ ପରୀକ୍ଷା କରି ଦେଖିଲେ ଯେ ସେ ପାଗଳା ନୁହନ୍ତି, ଭଲ । ସେ ମତ ଦେଲେ, ଯେଉଁମାନେ ଡିମୋକ୍ରେଟାସ୍‌ଙ୍କୁ ପାଗଳ ବୋଲି କହୁଛନ୍ତି, ସେମାନେ ହିଁ ପ୍ରକୃତରେ ପାଗଳ ।

ଡିମୋକ୍ରେଟାସ୍ ଖ୍ରୀ:ପୂ: ୩୭୭ ମସିହାରେ ଲାରିସା ସହରରେ ପରିଣତ ବୟସରେ ଦେହତ୍ୟାଗ କରିଥିଲେ । ତାଙ୍କର ଦୁଇ ପୁଅ ଥେଲାସାପ୍ ଓ ଡ୍ରେକୋ ତାଙ୍କ ଅନୁଗାମୀମାନେ ହିପୋକ୍ରେଟାସ୍‌ଙ୍କ ବିଧି ଅନୁଯାୟୀ ଓ ତାଙ୍କ ଅନ୍ତେ ରୋଗ ଚିକିତ୍ସା କରୁଥିଲେ । ତାଙ୍କ ସମସାମୟିକ ଦାର୍ଶନିକ ପ୍ଲେଟୋ ଓ ପ୍ଲେଟୋଙ୍କ ଛାତ୍ର ଏରିଷ୍ଟଟଲ ହିପୋକ୍ରେଟାସ୍‌ଙ୍କ ଅଶେଷ ପ୍ରଶଂସା କରନ୍ତି । ହିପୋକ୍ରେଟାସ୍‌ଙ୍କ ଧାରଣା ଥିଲା ରକ୍ତ, ପିତ୍ତ. କଫ ଓ କୃଷ୍ଣପିତ୍ତ ଏହି ଚାରୋଟି ଧାତୁର ସମନ୍ୱୟରେ ବ୍ୟାଘାତ ଘଟିଲେ ରୋଗ ସୃଷ୍ଟି ହୁଏ । ଏହି ସମନ୍ୱୟ ଯଦି ଠିକ୍ ଥାଏ, ତେବେ କୌଣସି ରୋଗ ହୁଏ ନାହିଁ । ବଡ଼ ବିଚିତ୍ର, ହିପୋକ୍ରେଟାସ୍‌ଙ୍କ ରୋଗ କାରଣ ଓ ଆମ ଆୟୁର୍ବେଦର ରୋଗ କାରଣ ଭିତରେ ଯଥେଷ୍ଟ ସାମଞ୍ଜସ୍ୟ ପରିଦୃଷ୍ଟ ହୁଏ ।

ହିପୋକ୍ରେଟାସ୍‌ଙ୍କ ଚିକିତ୍ସାବିଧି ଓ ଆଧୁନିକ ଚିକିତ୍ସା ବିଧିରେ ଯଥେଷ୍ଟ ପାର୍ଥକ୍ୟ ଦେଖା ଦେଇଥିଲେ ମଧ୍ୟ ତାଙ୍କ ନିଷ୍ଠା ଆଧୁନିକ ଚିକିତ୍ସାବିତ୍‌ଙ୍କର ଆର୍ଦଶ ହୋଇ ରହିଛି । ଏବେବି କଥା ପ୍ରସଙ୍ଗରେ ଡାକ୍ତରମାନଙ୍କ ଆଦର୍ଶ ଚେତାଇ ଦେବା ପାଇଁ ହିପୋକ୍ରେଟାସ୍‌ଙ୍କ ନିଷ୍ଠା କଥା ଉଦାହରଣ ଦିଆଯାଇଥାଏ । ମେଡିକାଲ ଛାତ୍ରମାନେ ଏବେବି ଚିକିତ୍ସା ବ୍ୟବସାୟରେ ପଶିବା ପୂର୍ବରୁ ହିପୋକ୍ରେଟାସ୍‌ଙ୍କ ଶପଥ ନେଇଥାନ୍ତି । ସେହି ଶପଥ ହେଉଛି, " ମୁଁ ନିୟମ କରି କହୁଛି, ଏହି ଶପଥ ସର୍ବଦା ପାଳନ କରିବି । ରୋଗୀକୁ ମୋ କ୍ଷମତା, ବିଜ୍ଞତା ଓ ଦକ୍ଷତା ଅନୁସାରେ ଚିକିତ୍ସା କରିବି । କୌଣସି ରୋଗୀ ପ୍ରତି ଅନ୍ୟାୟ କରିବି ନାହିଁ । କେହି ମାଗିଲେ କି ଅନୁରୋଧ କଲେ କାହାରିକୁ ବିଷାକ୍ତ ଔଷଧ ଦେବି ନାହିଁ । ମୁଁ ଯେଉଁ ରୋଗୀର ଗୃହକୁ ଯିବି, ରୋଗୀର ରୋଗ ଚିକିତ୍ସା ହିଁ କରିବି । ମୋ ବ୍ୟବସାୟ ସଂକ୍ରାନ୍ତରେ ମୁଁ ଯାହା ଦେଖିଛି ଓ ଶୁଣିଚି, ଏହା ଯଦି ପ୍ରକାଶ ଅନୁପଯୋଗୀ ହୋଇଥାଏ କେଉଁଠି ପ୍ରକାଶ କରିବି ନାହିଁ ।"

ଷଷ୍ଠ ଅଧ୍ୟାୟ

# ମହାନ୍ ଦାର୍ଶନିକ ତଥା ବୈଜ୍ଞାନିକ ପ୍ଲେଟୋ

ଏକ ମହାନ୍ ଗ୍ରୀକ୍ ଦାର୍ଶନିକ ଭାବରେ ପ୍ଲେଟୋ ସାରା ପୃଥିବୀରେ ଖ୍ୟାତ । ଦର୍ଶନ ଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ଥାଇ ସେ ଯେ ଜଣେ ବିଖ୍ୟାତ ବୈଜ୍ଞାନିକ, ଏହା ଅନେକେ ଜାଣନ୍ତି ନାହିଁ । ସେଥିପାଇଁ ପ୍ଲେଟୋଙ୍କୁ ବୈଜ୍ଞାନିକ ବୋଲି କହିଲେ ଅନେକେ ନାପସନ୍ଦ କରନ୍ତି । ସେମାନେ କହନ୍ତି ପ୍ଲେଟୋ ବିଜ୍ଞାନ ପ୍ରସାରରେ ପ୍ରତିରୋଧ କରୁଥିଲେ । ସେ ଜଣେ ଦାର୍ଶନିକ ହେଲେହେଁ ତାଙ୍କ ଠାରେ ବୈଜ୍ଞାନିକ ମନୋବୃତ୍ତିର ଏକାନ୍ତ ଅଭାବ ଥିଲା । ତେଣୁ ତାଙ୍କୁ ବୈଜ୍ଞାନିକ କହିବା ଅନ୍ୟାୟ । ବାସ୍ତବିକ ପ୍ଲେଟୋ କୌଣସି ଅଭିକ୍ରିୟା କରିବାକୁ ପସନ୍ଦ କରୁ ନ ଥିଲେ । କୌଣସି ଗୋଟିଏ ବିଷୟକୁ ପରୀକ୍ଷା କରି ଦେଖିବାକୁ ସେ ଚାହୁଁ ନ ଥିଲେ । ତାଙ୍କୁ ବୈଜ୍ଞାନିକ କୁହାଯିବ କାହିଁକି ? ପ୍ଲେଟୋଙ୍କ ବିରୋଧରେ ଏହା ଯାହାସବୁ କୁହାଯାଉଛି, ତାହା ସତ୍ୟ । ତେବେ ଜ୍ୟାମିତି ଓ ଗଣିତ ଶାସ୍ତ୍ରରେ ତାଙ୍କର ଅବଦାନ ଥିବାରୁ ତାଙ୍କୁ ବୈଜ୍ଞାନିକ ନ କହିଲେ ସତ୍ୟର ଅପଳାପ ହେବ ।

ପ୍ଲେଟୋ କେତେକଙ୍କ ମତରେ ଖ୍ରୀ:ପୂ: ୪୨୭ରେ ଗ୍ରୀସ୍ ଦେଶର ରାଜଧାନୀ ଏଥେନ୍ସ ସହରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରକୃତ ନାମ ଥିଲା ଏରିଷ୍ଟୋକ୍ଲସ୍ । ତାଙ୍କର ଖୁବ୍ ଚଉଡ଼ା କାନ୍ଧ ଥିବାରୁ ତାଙ୍କର ଡାକ ନାମ ଥିଲା ପ୍ଲେଟନ୍ । ସେହି ନାମରୁ ତାଙ୍କର

ପ୍ରକୃତ ନାମ ରହିଯାଇଛି ପ୍ଲେଟୋ । ପ୍ଲେଟୋ ପୃଥିବୀ ବିଖ୍ୟାତ ଗ୍ରୀକ୍ ଦାର୍ଶନିକ ତଥା ବୈଜ୍ଞାନିକ ଏରିଷ୍ଟଟଲଙ୍କର ଗୁରୁ ଥିଲେ । ପ୍ଲେଟୋଙ୍କ ଗୁରୁଦେବ ହେଉଛନ୍ତି ପୃଥିବୀପ୍ରସିଦ୍ଧ ଅନ୍ୟତମ ଗ୍ରୀକ୍ ଦାର୍ଶନିକ ସକ୍ରେଟିସ୍ । ପ୍ଲେଟୋ ବୈଜ୍ଞାନିକ ନ ଥିଲେ ସତ, କିନ୍ତୁ ବିଜ୍ଞାନ ଇତିହାସ ଉପରେ ତାଙ୍କର ଖୁବ୍ ଦକ୍ଷତା ଥିଲା । ସେ ଯେଉଁ ସମୟରେ ପ୍ରସିଦ୍ଧି ଅର୍ଜନ କରିଥିଲେ, ସେତେବେଳକୁ ଗ୍ରୀସ୍‌ରେ ବିଜ୍ଞାନ ଯଥେଷ୍ଟ ପ୍ରସାର ଲାଭ କରିଥାଏ ।

ଏକ ବିଖ୍ୟାତ ଦାର୍ଶନିକ ଭାବରେ ପ୍ଲେଟୋ ଏଥେନ୍ସ ସହରରେ ଏକ ଶିକ୍ଷା କେନ୍ଦ୍ର ଖୋଲିଲେ । ଚାରିଆଡୁ ବହୁ ଛାତ୍ର ସେଠାରେ ଶିକ୍ଷା ପାଇବା ପାଇଁ ଆସିଲେ । ସେ ଏଥେନ୍ସ ସହରର ଏକ ସୁନ୍ଦର ବଗିଚା ଭିତରେ ନିଜର ଶିକ୍ଷାକେନ୍ଦ୍ର ଖୋଲିଥାନ୍ତି । ପ୍ଲେଟୋଙ୍କ ପୂର୍ବରୁ ଏଥେନ୍‌ସରେ ପ୍ଲେଟୋଙ୍କ ଗୁରୁଦେବ ସକ୍ରେଟିସ୍ ଆଉ ଏକ ଶିକ୍ଷାକେନ୍ଦ୍ର ଖୋଲିଥାନ୍ତି । ଏହି ଶିକ୍ଷା କେନ୍ଦ୍ରରେ ପ୍ଲେଟୋ ଶିକ୍ଷା ଗ୍ରହଣ କରିଥିଲେ । ସକ୍ରେଟିସ୍‌ଙ୍କ ଭଳି ଗ୍ରୀସ୍‌ର ସୁପୁତ୍ରମାନଙ୍କ ଭିତରେ ପ୍ଲେଟୋ ଥିଲେ ଅନ୍ୟତମ । ସକ୍ରେଟିସ୍‌ଙ୍କ ଛାତ୍ରମାନଙ୍କ ଭିତରେ ସେ ଯେ ସବୁଠାରୁ ଅଧିକ ଖ୍ୟାତି ଅର୍ଜନ କରିବେ, ଏହା ତାଙ୍କ ଶିକ୍ଷା ଗ୍ରହଣ ବେଳୁ ଜଣାପଡ଼ିଯାଇଥିଲା । ପ୍ଲେଟୋ ନିଜ ସୁନ୍ଦର ବଗିଚା ଭିତରେ ବସି ଶିଷ୍ୟମାନଙ୍କୁ ଶିକ୍ଷା ଦିଅନ୍ତି । ପ୍ଲେଟୋ ତାଙ୍କ ଛାତ୍ରମାନଙ୍କୁ ଦର୍ଶନ, ସାହିତ୍ୟ ବ୍ୟତୀତ ଗଣିତ ଓ ଜ୍ୟାମିତି ପଢ଼ାଉଥିଲେ । ପ୍ଲେଟୋ ଜ୍ୟାମିତି ଓ ଗଣିତ ଚର୍ଚ୍ଚା କରିବାକୁ ଭାରି ଭଲ ପାଉଥିଲେ । ଜ୍ୟାମିତିରେ ତାଙ୍କ ଅବଦାନ ଅଶେଷ । ସେ ଗଣିତ ଓ ଜ୍ୟାମିତି ଚର୍ଚ୍ଚାକୁ ଏତେ ଭଲ ପାଉଥିଲେ ଯେ ତାଙ୍କ ଶିକ୍ଷାକେନ୍ଦ୍ରର ଫାଟକ ମୁହଁରେ ବଡ଼ ବଡ଼ ଅକ୍ଷରରେ ଲେଖିଥିଲେ –

''ଯେଉଁମାନଙ୍କର ଗଣିତ ଓ ଜ୍ୟାମିତି ବିଦ୍ୟା ପ୍ରତି ଆକର୍ଷଣ ନାହିଁ, ସେମାନଙ୍କର ଏହି ଶିକ୍ଷା କେନ୍ଦ୍ର ଭିତରକୁ ପଶିବା ଦରକାର ନାହିଁ ।''

ଜ୍ୟାମିତିରେ ପ୍ଲେଟୋଙ୍କ ଦାନ କିଛି କମ୍ ନୁହେଁ । ପ୍ଲେଟୋଙ୍କ ସମୟ ପର୍ଯ୍ୟନ୍ତ ଜ୍ୟାମିତିରେ କେବଳ ବୃତ୍ତ, ଏହାର ଚାପ ଓ କ୍ଷେତ୍ରଫଳ ଆଦି ସମ୍ବନ୍ଧରେ ଜଣାଥିଲା । କିନ୍ତୁ ପ୍ଲେଟୋ ତାଙ୍କ ନିଜ ପ୍ରତିଭା ବଳରେ ସେଥିରେ ଅର୍ଦ୍ଧବୃତ୍ତ, ପରାବୃତ୍ତ ଆଦିର କ୍ଷେତ୍ରଫଳ ବାହାର କରିବାର ପଦ୍ଧତି ଓ ଅନ୍ୟାନ୍ୟ କେତେକ ସୂତ୍ର ଯୋଗ କଲେ । ସେ ମେନାକ୍ରୁସସ୍‌ଙ୍କ ସହ ସହଯୋଗ କରି ଗଣିତର ଏକ ପ୍ରଧାନ ଅଙ୍ଗ 'କୋନିକ୍' ବିଭାଗର ମୂଳଦୁଆ ସ୍ଥାପନ କରିଥିଲେ । ପ୍ଲେଟୋଙ୍କ ଜନୈକ ଛାତ୍ର ପ୍ରୋକଲସ ପ୍ଲେଟୋଙ୍କ ମୃତ୍ୟୁ ପରେ ଆହୁରି ସୂଚାଇଥିଲେ ଯେ ପ୍ଲେଟୋ ହେଉଛନ୍ତି ପ୍ରକୃତରେ ''ଜ୍ୟାମିତିକ ବିଶ୍ଳେଷଣ''ର ଆବିଷ୍କର୍ତ୍ତା ।

ଜ୍ୟୋତିଷ ବିଜ୍ଞାନରେ ପ୍ଲେଟୋଙ୍କ ଦକ୍ଷତା ଅସୀମ ଥିଲା । ପୃଥିବୀଠାରୁ ଚନ୍ଦ୍ର, ସୂର୍ଯ୍ୟ, ଶୁକ୍ର, ବୁଧ, ବୃହସ୍ପତି, ଶନିର ଆନୁପାତିକ ଦୂରତା କେତେ, ସେ ନିଜ ଗଣନା ବଳରେ ନିର୍ଣ୍ଣୟ କରିପାରିଥିଲେ ।

ବହୁ ବଡ଼ ବଡ଼ ଲୋକଙ୍କର ଯେପରି ନିନ୍ଦୁକମାନେ ଥାନ୍ତି, ସେହିଭଳି ନିନ୍ଦୁକ ପ୍ଲେଟୋଙ୍କର ମଧ୍ୟ ଥିଲେ । ସେମାନେ କହନ୍ତି ପ୍ଲେଟୋ ଯାହା ପ୍ରଚାର କରିଥିଲେ ତାହା ସେ ଇଟାଲୀ ଦେଶର ଦକ୍ଷିଣରେ ଥିବା ସିସିଲି ଦ୍ୱୀପର ଫିଲୋଲସ ନାମକ ପିଥାଗୋରାସ୍‌ଙ୍କ ଜନୈକ ଛାତ୍ରଠାରୁ କିଣି ଆଣିଥିବା ଏକ ପାଣ୍ଡୁଲିପିରୁ ଚୋରି କରି ନିଜର ବୋଲି ବଖାଣୁ ଥିଲେ । ଟିମନ

ନାମକ ଜଣେ କବି ସେଥିପାଇଁ ବ୍ୟଙ୍ଗ କବିତାଟିଏ ଲେଖି ତାଙ୍କୁ ଉପହାସ କରିଥିଲେ ।

କହିବା କଠିନ, ପ୍ଲେଟୋଙ୍କ ନିନ୍ଦୁକମାନେ ଯାହା ପ୍ରଚାର କରିଥିଲେ ତାହା ସତ କି ମିଛ । ତେବେ ଏତିକି କୁହାଯାଇପାରେ ଯେ ପ୍ଲେଟୋଙ୍କ ବିରୋଧରେ ଯେଉଁମାନେ କୁତ୍ସାରଟନା କରିଥିଲେ, ସେମାନେ ସେ ଯୁଗରେ କୌଣସି ଉଚ୍ଚପଦସ୍ଥ ବା ସମ୍ମାନଜନକ ବ୍ୟକ୍ତି ନ ଥିବାରୁ ପ୍ଲେଟୋଙ୍କ ସୁଖ୍ୟାତି ଉପରେ ଆଞ୍ଚ ଆଣିବା ଅତୀବ କଷ୍ଟକର ଥିଲା । ତାଙ୍କ ନିନ୍ଦୁକମାନେ ତାଙ୍କୁ ଶତ ନିନ୍ଦା କଲେ ମଧ୍ୟ ସେ ଗ୍ରୀସ୍ ଦେଶର ବଡ଼ ବଡ଼ ମନୀଷୀମାନଙ୍କ ମଧ୍ୟରେ ଯେ ଏକ ଉଚ୍ଚ ଆସନ ଦଖଲ କରି ବସିଥିବେ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ପ୍ଲେଟୋ କୌଣସି ସତ୍ୟକୁ ପରୀକ୍ଷା କରିବା ପାଇଁ ଅଭିକ୍ରିୟାର ଆବଶ୍ୟକତାକୁ ମୋଟେ ପସନ୍ଦ କରୁ ନ ଥିଲେ । ଅଭିକ୍ରିୟା, ପର୍ଯ୍ୟବେକ୍ଷଣ ଆଦିକୁ ସେ ବିତୃଷ୍ଣା ଦେଖାଉଥିଲେ । ଏଥିପାଇଁ ସେ ବିଜ୍ଞାନର ପ୍ରଗତିରେ ବହୁ ବାଧା ଜନ୍ମାଉଥିଲେ । ସେ କହୁଥିଲେ, ପ୍ରକୃତ ପୃଥିବୀକୁ ପର୍ଯ୍ୟବେକ୍ଷଣ କରିବା କଥା ନୁହେଁ, ଦାର୍ଶନିକ ଦୃଷ୍ଟିକୋଣରୁ ଉପଲବ୍ଧି କରିବା କଥା । ଅବଶ୍ୟ ତାଙ୍କ ଶିଷ୍ୟ ଏରିଷ୍ଟଟଲ ଏହା ବିରୋଧରେ ମତ ଦେଇଥିଲେ । ସେ କୌଣସି ଯନ୍ତ୍ରବିଦ୍ୟାକୁ ଉତ୍ସାହିତ କରୁ ନ ଥିଲେ । ସେଥିପାଇଁ ସେ ଯୁଗରେ ଗ୍ରୀସ୍‌ରେ କୌଣସି ଯନ୍ତ୍ରବିଦ୍ୟାର ବିକାଶ ଘଟିପାରି ନ ଥିଲା । ତେବେ ପ୍ଲେଟୋଙ୍କର ଗଣିତ ପ୍ରତି ଆଗ୍ରହ, ଯାହା କିଛି ସେହି ବିଜ୍ଞାନର ପ୍ରଗତିରେ ସାହାଯ୍ୟ କରିଥିଲା । ପ୍ଲେଟୋ କେତେକଙ୍କ ମତରେ ଖ୍ରୀ:ପୂ: ୩୪୭ ମସିହାରେ ପ୍ରାଣତ୍ୟାଗ କରିଥିଲେ ।

ପ୍ଲେଟୋ ବିଜ୍ଞାନର ପ୍ରଗତି ପାଇଁ କିଛି କରି ନ ଥିଲେହେଁ ବିଜ୍ଞାନର ଦର୍ଶନ କ୍ଷେତ୍ରରେ ତାଙ୍କର ସାର୍ଥକ ଅବଦାନ ରହିଛି । ତାଙ୍କ ପ୍ରତିଷ୍ଠିତ ଶିକ୍ଷାକେନ୍ଦ୍ର ଏଥେନସ୍‌ରେ ପ୍ରାୟ ଏକହଜାର ବର୍ଷ ଧରି ସୁଖ୍ୟାତିର ସହ ତିଷ୍ଠି ପାରିଥିଲା । ତେବେ ଗ୍ରୀକ୍ ମହାରାଜା ଜଷ୍ଟିନିଆନ୍‌ଙ୍କ ଆଦେଶରେ ପ୍ଲେଟୋଙ୍କ ଶିକ୍ଷାକେନ୍ଦ୍ର ଖ୍ରୀ:ଅ: ୫୨୯ରେ ବନ୍ଦ କରି ଦିଆଯାଇଥିଲା ।

### ସପ୍ତମ ଅଧ୍ୟାୟ

# ମହାମନୀଷୀ ଏରିଷ୍ଟଟଲ

ଗ୍ରୀସ୍ ଦେଶରେ ଯେତେ ବୈଜ୍ଞାନିକ ଓ ଦାର୍ଶନିକ ଜନ୍ମଲାଭ କରିଛନ୍ତି, ସେମାନଙ୍କ ମଧ୍ୟରେ ଏରିଷ୍ଟଟଲ ହେଉଛନ୍ତି ପ୍ରସିଦ୍ଧତମ । ଦାର୍ଶନିକ ଅବଦାନରେ ତାଙ୍କର ଯେଭଳି ସୁଖ୍ୟାତି ରହିଛି, ବୈଜ୍ଞାନିକ ଅବଦାନରେ ତା'ଠାରୁ କିଛି କମ୍ ନୁହେଁ । ତାଙ୍କ ପ୍ରଚାରିତ ବହୁ ତଥ୍ୟ ପ୍ରମାଦଯୁକ୍ତ ହେଲେହେଁ ଏହା ହଜାର ହଜାର ବର୍ଷ ଧରି ସତ୍ୟ ଓ ପ୍ରମାଦଶୂନ୍ୟ ଭାବରେ ପ୍ରଚଳିତ ହୋଇ ଆସିଥିଲା । ଏରିଷ୍ଟଟଲଙ୍କ ବ୍ୟକ୍ତିତ୍ୱ ତାଙ୍କ



ଏରିଷ୍ଟଟଲ

ମୃତ୍ୟୁ ପରେ ମହାନ୍ ଭାବରେ ପୂଜା ପାଉଥିଲା ଯେ କେହି ତାଙ୍କ ତଥ୍ୟର ପ୍ରମାଦ ଦର୍ଶାଇବାକୁ ସାହସ କରୁ ନ ଥିଲେ । ତାଙ୍କ ତଥ୍ୟର ପ୍ରମାଦ ଦେଖାଇବାକୁ ଯାଇ ପରବର୍ତ୍ତୀ କାଳର କେତେ ବୈଜ୍ଞାନିକ ଲାଞ୍ଛିତ, ଦଣ୍ଡିତ ଓ ଅପମାନିତ ଯେ ହୋଇଅଛନ୍ତି, ତା'ର କଳନା ନାହିଁ । ଉଦ୍ଭିଦ ବିଜ୍ଞାନ, ପ୍ରାଣିବିଜ୍ଞାନ, ପଦାର୍ଥ ବିଜ୍ଞାନ ଆଦି ବିଜ୍ଞାନର ବିଭିନ୍ନ ବିଭାଗରେ ତାଙ୍କ ଅବଦାନ ଅସୀମ ।

ଇତିହାସବିତ୍‌ମାନେ କହନ୍ତି, ତାଙ୍କର ଉପରୋକ୍ତ ବୈଜ୍ଞାନିକ ଅବଦାନ ସଙ୍ଗେ ସଙ୍ଗେ ଦାର୍ଶନିକ ଅବଦାନକୁ ବର୍ଣ୍ଣନା କରିବା ପାଇଁ ସେ ୬୦୦ରୁ ୧୦୦୦ ପର୍ଯ୍ୟନ୍ତ ପୁସ୍ତକ ରଚନା କରିଥିଲେ । ତାଙ୍କର ସେହି ପୁସ୍ତକ ଭିତରୁ ମାତ୍ର ୪୭ ଗୋଟି ଗ୍ରନ୍ଥ ପରବର୍ତ୍ତୀ କାଳରେ ଲୋକଲୋଚନର ଗୋଚରକୁ ଆସିପାରିଥିଲା । ଏଗୁଡ଼ିକ ପ୍ରଧାନତଃ ଦର୍ଶନ, ବିଜ୍ଞାନ ସମ୍ବନ୍ଧୀୟ ପୁସ୍ତକ ।

ମନୀଷୀ ଏରିଷ୍ଟଟଲ ଖ୍ରୀଷ୍ଟପୂର୍ବ ୩୮୪ ମସିହାରେ ଜନ୍ମଗ୍ରହଣ କରିଥିଲେ ଗ୍ରୀସ୍ ଦେଶର ମେସିଡୋନିଆ ରାଜ୍ୟର ଏଜିଆନ ସାଗର ତୀରବର୍ତ୍ତୀ ଷ୍ଟେଗିରା ସହରରେ । ତାଙ୍କ ପିତା ହେଉଛନ୍ତି ନିକୋମେଚୁସ ଜଣେ ମାନ୍ୟଗଣ୍ୟ ବ୍ୟକ୍ତି, ମେସିଡୋନିଆ ରାଜ୍ୟର ଓ ମହାବୀର ଆଲେକ୍‌ଜାଣ୍ଡରଙ୍କ ଗୋସାଇଁବାପା ରାଜା ତୃତୀୟ ଏମିନ୍‌ଟାସ୍‌ଙ୍କ ରାଜଦରବାରର ଚିକିତ୍ସକ । ଏରିଷ୍ଟଟଲ ଯେତେବେଳେ ପିଲା ହୋଇଥିଲେ, ତାଙ୍କ ବାପ ମାଆ ମରିଗଲେ । ତେଣୁ ସେ ତାଙ୍କ ପିତାଙ୍କ ବନ୍ଧୁ ଏସିଆ ମାଇନର ରାଜ୍ୟସ୍ଥ ଏଟାରନିୟସ୍‌ର ପ୍ରୋକସିନ୍‌ସଙ୍କ ତତ୍ତ୍ୱାବଧାନରେ ରହି ବଢ଼ିଥିଲେ । ପ୍ରୋକ୍‌ସିନ୍‌ସ ଏହି ଶିଶୁ ଏରିଷ୍ଟଟଲଙ୍କ ଭିତରେ ଦର୍ଶନ ମନୋଭାବ ଓ ବିରାଟ ବୈଜ୍ଞାନିକ ପ୍ରତିଭା ଥିବାର ଲକ୍ଷ୍ୟ କଲେ । ତେଣୁ ଭଲ ଭାବରେ ଶିକ୍ଷା ପାଇବା ପାଇଁ ସେ ଏରିଷ୍ଟଟଲଙ୍କୁ ସତର ବର୍ଷ ବୟସରେ ଗ୍ରୀସ୍ ରାଜଧାନୀ ଏଥେନ୍‌ସ ସହରକୁ ପଠାଇଦେଲେ । ତାଙ୍କର ଧାରଣା ଥିଲା ଯେ ଏରିଷ୍ଟଟଲଙ୍କ ପିତା ଏରିଷ୍ଟଟଲଙ୍କ ପାଇଁ ଯେଉଁ ପ୍ରଚୁର ଧନସମ୍ପତ୍ତି ରଖି ଯାଇଛନ୍ତି, ସେଥିରେ ଏରିଷ୍ଟଟଲ ଜୀବନସାରା ଖୁବ୍ ଭଲ ଭାବରେ ଚଳି ଜ୍ଞାନଚର୍ଚ୍ଚାରେ ଲିପ୍ତ ରହି ପାରିବେ ।

ସେତେବେଳେ ଏଥେନ୍ସ ସହରରେ ପ୍ଲେଟୋଙ୍କ ଶିକ୍ଷାକେନ୍ଦ୍ର ଖୁବ୍ ପ୍ରସିଦ୍ଧି ଅର୍ଜନ କରିଥାଏ । ଚାରିଆଡୁ ବହୁ ଛାତ୍ର ସେଠାରେ ଶିକ୍ଷା ପାଇବା ପାଇଁ ଆସୁଥାନ୍ତି । ଏରିଷ୍ଟଟଲ ଖୁବ୍ ମେଧାବୀ ଥିବାରୁ ଉପଯୁକ୍ତ ଗୁରୁଙ୍କର ଉପଯୁକ୍ତ ଛାତ୍ର ଭାବରେ ସେହି ଶିକ୍ଷାକେନ୍ଦ୍ରରେ ପ୍ରସିଦ୍ଧି ଅର୍ଜନ କଲେ । ପ୍ଲେଟୋଙ୍କ ଶିକ୍ଷାକେନ୍ଦ୍ରରେ କୋଡ଼ିଏ ବର୍ଷ ରହି ସେ ସବୁ ପ୍ରକାର ବିଦ୍ୟାଶିକ୍ଷା କରିଥିଲେ । ସେ ଏହି ସମୟ ଭିତରେ ନିଜକୁ ଏକ ବିରାଟ ମଣିଷ ଭାବରେ ଗଢ଼ି ତୋଳିବାକୁ ଚେଷ୍ଟା କରିଥିଲେ । ଏଠାରେ ପଢ଼ିଲାବେଳେ ତାଙ୍କର ଜ୍ଞାନପିପାସା ଆଶାତୀତ ଭାବରେ ବଢ଼ି ଯାଇଥିଲା । ଦିନରାତି ସବୁବେଳେ ପାଠ ପଢ଼ିବା ପାଇଁ ଏତେ ଝୁଙ୍କ ଯେ ସେ କିପରି ବେଶି ସମୟ ଶୋଇ ନ ପଡ଼ିବେ, ସେଥିପାଇଁ ନାନା ବ୍ୟବସ୍ଥା ଖଞ୍ଜିଥିଲେ । ତାଙ୍କର ସମସାମୟିକ ଡାୟୋଜେନିସ ଲାରସିୟସ୍ କହନ୍ତି ଯେ ତାଙ୍କର ଜ୍ଞାନାର୍ଜ୍ଜନ ପିପାସା ଏତେ ପ୍ରବଳ ହୋଇପଡ଼ିଥିଲା ଯେ ସେ ରାତିରେ ଅଧିକ ନ ଶୋଇବା ପାଇଁ ନାନା ବ୍ୟବସ୍ଥା ଖଞ୍ଜିଥିଲେ । ସେ ତାଙ୍କ ହାତ ପାଖରେ ଗୋଟିଏ ପିତ୍ତଳ ବେଲା ଓ ହାତରେ ଗୋଟିଏ ସୀସା ତିଆରି ପେଣ୍ଡୁ ଧରି ପଢୁଥିଲେ । ତାଙ୍କ ହାତଟି ଏହି ବେଲା ଉପରେ ରହୁଥିଲା । ସେ ଯେତେବେଳେ ଢୁଳାଇବାକୁ ଆରମ୍ଭ କରୁଥିଲେ, ସେତେବେଳେ ତାଙ୍କ ହାତ ଅବଶ ହୋଇ ପଡୁଥିଲା, ଫଳରେ ସୀସା ପେଣ୍ଡୁଟି ହାତରୁ ଖସି ବେଲା ଭିତରେ ପଡ଼ି ଏକ ଶବ୍ଦ ସୃଷ୍ଟି କରୁଥିଲା । ଏହି ଶବ୍ଦ ଶୁଣି ଏରିଷ୍ଟଟଲ ପୁଣି ଉଠି ପଢୁଥିଲେ । ବାସ୍ତବିକ୍ ଯେଉଁମାନେ ବଡ଼କାଳରେ ବିରାଟ ଚିନ୍ତାନାୟକ ଓ ପ୍ରତିଭାବାନ୍ ବ୍ୟକ୍ତି ହୁଅନ୍ତି, ପିଲାଦିନରୁ ସେମାନଙ୍କର ସେହି ଗୁଣ ଯେ କିୟଦଂଶ ଭାବରେ ପ୍ରସ୍ଫୁଟିତ ହୁଏ, ତାହା ଏରିଷ୍ଟଟଲଙ୍କ ଛାତ୍ରାବସ୍ଥାରେ ଏହି କାର୍ଯ୍ୟରୁ ସ୍ପଷ୍ଟ ଜଣାପଡ଼େ ।

ଏରିଷ୍ଟଟଲ ତାଙ୍କ ଯୁବା ସମୟରେ ଖୁବ୍ ସୌଖୀନ ପ୍ରକୃତିର ଲୋକ ଥିଲେ । ତାଙ୍କର ସୁନ୍ଦର ଚେହେରା, ମନମତାଣିଆ ଛୋଟ ଛୋଟ ଆଖି ଓ ନମ୍ରସ୍ୱର ତାଙ୍କୁ ଅନ୍ୟମାନଙ୍କ ଆଖିରେ ଆହୁରି କେତେ ସୁନ୍ଦର କରି ଯେ ତୋଳୁଥିଲା, ତାର ପ୍ରମାଣ ମିଳିଲା ବହୁପରେ, ଯେତେବେଳେ ସେ ରାଜକନ୍ୟା ପିଥିଆସ୍‌ଙ୍କ ପ୍ରେମରେ ପଡ଼ିଲେ । ଏରିଷ୍ଟଟଲ ତାଙ୍କ ଚେହେରାକୁ ଆହୁରି ସୁନ୍ଦର କରିବାକୁ ସର୍ବଦା ଚେଷ୍ଟା କରୁଥିଲେ । ସବୁବେଳେ ଭଲ ଭଲ ପୋଷାକ ପିନ୍ଧିବା ତାଙ୍କର ଏକ ଅଭ୍ୟାସ ହୋଇପଡ଼ିଥିଲା ।

ପ୍ଲେଟୋଙ୍କର ଯେତେଗୁଡ଼ିଏ ଛାତ୍ର ଥିଲେ, ସମସ୍ତଙ୍କ ଭିତରେ ଅଧିକ ମେଧାବୀ ଥିଲେ ଏରିଷ୍ଟଟଲ । ସେଥିପାଇଁ ଛାତ୍ର ମହଲରେ ତାଙ୍କ ପ୍ରତିପତ୍ତି ସବୁଠାରୁ ଅଧିକ । ତାଙ୍କ ସାଙ୍ଗସାଥୀମାନେ ତାଙ୍କୁ ଭାରି ଭଲ ପାଉଥିଲେ, ତାଙ୍କର ତୀକ୍ଷ୍ଣ ବୁଦ୍ଧି ଓ ଅଭୂତପୂର୍ବ ମେଧାପାଇଁ ଶିକ୍ଷାକେନ୍ଦ୍ରରେ କେବେ ଯଦି ବକ୍ତୃତା ପ୍ରତିଯୋଗିତା ହେଉଥିଲା, ତେବେ ସେ ସେହି ପ୍ରତିଯୋଗିତାରେ ବକ୍ତୃତା ପ୍ରସଙ୍ଗରେ ସର୍ବଦା ନିଜର ବ୍ୟକ୍ତିଗତ ମତ ବ୍ୟକ୍ତ କରୁଥିଲେ । ଗୁରୁଦେବ ପ୍ଲେଟୋ, ବିଦେଶର ବଡ଼ ବଡ଼ ମନୀଷୀମାନଙ୍କର ମତ ସେ ସମ୍ପର୍କରେ କଅଣ, ସେ ଆଡ଼କୁ ମୋଟେ ଭ୍ରୂକ୍ଷେପ କରୁ ନ ଥିଲେ । ଅନେକ ସମୟରେ ବିଭିନ୍ନ ବିଷୟରେ ତାଙ୍କ ମତ ଗୁରୁଙ୍କ ମତଠାରୁ ପୃଥକ ହେଉଥିଲା ଓ ସେହି ମତକୁ ବ୍ୟକ୍ତ କରିବାକୁ ସେ ପଶ୍ଚାତ୍‌ପଦ ହେଉ ନ ଥିଲେ ।

ଖ୍ରୀଷ୍ଟପୂର୍ବ ୩୪୭ ମସିହାରେ ପ୍ଲେଟୋଙ୍କ ମୃତ୍ୟୁ ହେଲା । ଗୁରୁଦେବଙ୍କ ମୃତ୍ୟୁ ପରେ ସେହି ଶିକ୍ଷାକେନ୍ଦ୍ର ପ୍ଲେଟୋଙ୍କ ପୁତୁରା ସ୍ପିଉସିପ୍ପସଙ୍କ ହାତରେ ପଡ଼ିଲା । ଏହା ଫଳରେ ଏରିଷ୍ଟଟଲ ଓ

ତାଙ୍କର ଜଣେ ସାଙ୍ଗ ଜିନୋକ୍ରେଟସ୍ ସେଇ ଶିକ୍ଷାକେନ୍ଦ୍ର ଛାଡ଼ି ଚାଲିଗଲେ । ସେମାନେ ଯାଇ ପହଞ୍ଚିଲେ ଏସିଆ ମାଇନର ରାଜ୍ୟସ୍ଥ ଏଟାର୍ନିୟସ ସହରରେ, ଏରିଷ୍ଟଟଲଙ୍କ ବାପାଙ୍କ ବନ୍ଧୁ ଓ ତାଙ୍କ ତତ୍ତ୍ୱାବଧାରକଙ୍କ ନିକଟରେ । ସେ ସେଠାକାର ଯୁବକ ରାଜା ହେର୍ମିଆସ୍‌ଙ୍କ ସହିତ ପରିଚିତ ହେଲେ ଓ କିଛିଦିନ ଭିତରେ ତାଙ୍କ ସହିତ ବନ୍ଧୁତ୍ୱ ସୂତ୍ରରେ ବାନ୍ଧିହୋଇ ପଡ଼ିଲେ । ସେ ଓ ଜିନୋକ୍ରେଟାସ୍ଙ୍କ ରାଜଦରବାରରେ କିଛିଦିନ ରହିଲେ ଓ ସେଠାରେ ସେ ରାଜାଙ୍କ ଝିଅାରୀ ପିଥିଆସ୍‌ଙ୍କ ପ୍ରେମରେ ପଡ଼ିଲେ । ପରିଶେଷରେ ସେ ତାଙ୍କୁ ବିବାହ କଲେ ।

କିନ୍ତୁ କିଛିଦିନ ପରେ ରାଜା ହେର୍ମିଆସ ନିହତ ହେଲେ । ତେଣୁ ଏରିଷ୍ଟଟଲ ଓ ଜିନୋକ୍ରେଟସ ସେଠାରେ ରହିବାକୁ ଇଚ୍ଛା କଲେନି । ଜିନୋକ୍ରେଟସ ଏଥେନ୍ସ ଫେରିଆସିଲେ । ଏରିଷ୍ଟଟଲ ରାଜକୁମାରୀ ପିଥିଆସଙ୍କୁ ଧରି ମିଟିଲିନ୍‌କୁ ଚାଲିଗଲେ । ସେ ତତ୍‌ପରେ ମେସିଡୋନିଆନ୍ ରାଜ୍ୟର ରାଜା ଏମିଟାସ୍‌ଙ୍କ ପୁତ୍ର ଫିଲିପ୍ସଙ୍କ ଶୁଭଦୃଷ୍ଟିରେ ପଡ଼ିଲେ । ରାଜା ନିଜ ଦ୍ୱିତୀୟ ବାଳକ ପୁତ୍ର ଆଲେକ୍‌ଜାଣ୍ଡରଙ୍କ ଗୁରୁ ଭାବରେ ତାଙ୍କୁ ନିଯୁକ୍ତ କଲେ । ଏହି ବାଳକ ଆଲେକ୍‌ଜାଣ୍ଡର ପରେ ହୋଇଥିଲେ ପ୍ରବଳ ପ୍ରତାପୀ ମହାବୀର ଆଲେକ୍‌ଜାଣ୍ଡର ।

ଗୁରୁ ଏରିଷ୍ଟଟଲଙ୍କ ପ୍ରଭାବ ଛାତ୍ର ଆଲେକ୍‌ଜାଣ୍ଡରଙ୍କ ଉପରେ କିପରି ପଡ଼ିଥିଲା, ତାହା କହିବା କଷ୍ଟକର । କିନ୍ତୁ ଆଲେକ୍‌ଜାଣ୍ଡରଙ୍କ ପିତା ଏରିଷ୍ଟଟଲଙ୍କ ଶିକ୍ଷାଦାନରେ ଯେ ଖୁବ୍ ସନ୍ତୁଷ୍ଟ ଥିଲେ ଏହା ଜଣା ପଡ଼ିଥିଲା । ସେ ଏରିଷ୍ଟଟଲଙ୍କୁ ଭାରି ଭଲ ପାଉଥିଲେ । ସେଥିପାଇଁ ଏରିଷ୍ଟଟଲଙ୍କ ଜନ୍ମସ୍ଥାନ ଷ୍ଟାଗିରାରେ ଯୁଦ୍ଧ ଯୋଗୁଁ ନାନା କ୍ଷତି

ହୋଇଥିବାରୁ ସେ ସେଗୁଡ଼ିକ ପୁନଃ ତିଆରି ପାଇଁ ଆଦେଶ ଦେଇଥିଲେ । ତାଙ୍କ ବୈଜ୍ଞାନିକ ଗବେଷଣା ପାଇଁ ସେ ଅଜସ୍ର ଧନ ଯୋଗାଇ ଦେଇଥିଲେ ।

## ଶିକ୍ଷାକେନ୍ଦ୍ର ସ୍ଥାପନ

ଖ୍ରୀଷ୍ଟପୂର୍ବ ୩୩୬ ମସିହାରେ ରାଜା ଫିଲିପ୍ ନିହତ ହେଲେ । ତେଣୁ ଆଲେକ୍‌ଜାଣ୍ଡରଙ୍କୁ ମେସିଡୋନିଆ ରାଜ୍ୟର ସିଂହାସନରେ ବସିବାକୁ ପଡ଼ିଲା । ଆଲେକ୍‌ଜାଣ୍ଡର ରାଜା ହେବାରୁ ଗୁରୁ ଏରିଷ୍ଟଟଲଙ୍କୁ ଶିକ୍ଷାଦାନ କାର୍ଯ୍ୟରୁ ଅବ୍ୟାହତି ଦେଲେ । ଏରିଷ୍ଟଟଲ ଆଉ ଆଲେକ୍‌ଜାଣ୍ଡରଙ୍କ ରାଜଦରବାରରେ ଅଧିକ ଦିନ ନ ରହି ମହା ଆନନ୍ଦରେ ତାଙ୍କଠାରୁ ବିଦାୟ ନେଇ ଏଥେନସ୍ ସହରକୁ ପୁଣି ଫେରିଆସିଲେ । ଏହି ସମୟରେ ଗୁରୁଦେବ ପ୍ଲେଟୋଙ୍କ ପୁତୁରା ସ୍ପିଉସିପସଙ୍କ ମୃତ୍ୟୁ ହୋଇଯାଇଥିବାରୁ ଶିକ୍ଷାକେନ୍ଦ୍ର ପରିଚାଳନା ଭାର ଖାଲି ପଡ଼ିଥାଏ । ସେହି ଅନୁଷ୍ଠାନର ପରିଚାଳନା ଦାୟିତ୍ୱ ତାଙ୍କୁ ଯଚା ଯାଇଥିଲେ ମଧ୍ୟ ସେ ତାହା ଗ୍ରହଣ ନ କରି ସଙ୍ଗୀ ଜିନୋକ୍ରେଟସଙ୍କୁ ଦିଆଇଥିଲେ ।

କିଛିଦିନ ପରେ ଏରିଷ୍ଟଟଲ ନିଜର ଏକ ସ୍ୱତନ୍ତ୍ର ଶିକ୍ଷାଦାନ କେନ୍ଦ୍ର ଖୋଲିବା ପାଇଁ ମନସ୍ଥ କଲେ । ବହୁ ସ୍ଥାନ ବଛାବଛି ପରେ ଏଥେନସ ସହରର ଲିସିୟମ୍‌ଠାରେ ଏହା ଖୋଲିବା ପାଇଁ ସ୍ଥିର ହେଲା । ସେଠାରେ ଏପୋଲୋଲିକାୟସଙ୍କ ଯେଉଁ ମନ୍ଦିର ଥିଲା, ସେହି ମନ୍ଦିର ନିକଟରେ ତାଙ୍କର ଶିକ୍ଷାକେନ୍ଦ୍ର ଖୋଲାହେଲା । ଚାହୁଁ ଚାହୁଁ ଅଳ୍ପ କେଇଦିନ ଭିତରେ ଏହି ଶିକ୍ଷାକେନ୍ଦ୍ରଟିର ପ୍ରସିଦ୍ଧି ଚାରିଆଡ଼େ ଫୁଲର ମହକ ଭଳି ଖେଳିଗଲା । ତାଙ୍କଠାରେ ଶିକ୍ଷା ପାଇବା ପାଇଁ ଚାରିଆଡୁ ଅନେକ ଛାତ୍ର ଆସିଲେ । ତାଙ୍କ

ଶିକ୍ଷାକେନ୍ଦ୍ରରେ ଅଧିକ ଜ୍ଞାନ ଅର୍ଜନ କରିବାପାଇଁ କେତେଆଡୁ କେତେ ପଣ୍ଡିତ ଯେ ଆସିଲେ ତାର କଳନା ନାହିଁ । ଏରିଷ୍ଟଟଲ ସେହି ଶିକ୍ଷାକେନ୍ଦ୍ରରେ ପ୍ରାୟ ବାର ବର୍ଷ କାଳ ରହି ନାନା ଆଲୋଚନା, ଅଧ୍ୟୟନ, ଅଧ୍ୟାପନା, ଶିକ୍ଷାଦାନ, ଗବେଷଣାରେ ବ୍ୟସ୍ତ ରହିଲେ । ସେ ଏହିଠାରେ ଏହି ଗବେଷଣା କରି ପୃଥିବୀକୁ ତାଙ୍କର ଯେଉଁସବୁ ଅମୂଲ୍ୟ ଜ୍ଞାନ ଦେଇ ଯାଇଛନ୍ତି, ତାହା ପ୍ରାୟ ଦୁଇହଜାର ବର୍ଷଧରି ସାରା ପୃଥିବୀକୁ ପ୍ରଭାବିତ କରି ଆସିଥିଲା ।

ଏରିଷ୍ଟଟଲଙ୍କ ଶିକ୍ଷାକେନ୍ଦ୍ର ଭିତରକୁ ପ୍ରବେଶ କରିବାପାଇଁ ଗୋଟିଏ ବଡ଼ ଫାଟକ ଥିଲା । ସେହି ଫାଟକଠାରୁ ଗୋଟିଏ ଗୋଡ଼ି ପକା ରାସ୍ତା ତାଙ୍କ ଶିକ୍ଷାକେନ୍ଦ୍ରର ଆହୁରି ଭିତରକୁ ଯାଇଥିଲା । ରାସ୍ତାର ଦୁଇପାଖରେ ଦୁଇଧାଡ଼ି ଗଛ ଥାଇ ରାସ୍ତାର ସୌନ୍ଦର୍ଯ୍ୟକୁ ଆଶାତୀତ ଭାବରେ ବଢ଼ାଉଥିଲା । ଏରିଷ୍ଟଟଲଙ୍କ ଅଭ୍ୟାସ ଥିଲା ସେଇ ରାସ୍ତାର ଏମୁଣ୍ଡରୁ ସେମୁଣ୍ଡକୁ ବୁଲିବା ଓ ସେହି ସମୟ ମଧ୍ୟରେ ଛାତ୍ରମାନଙ୍କୁ ନେଇ ସେମାନଙ୍କୁ ଶିକ୍ଷାଦେବା ଓ ସେମାନଙ୍କ ସହିତ ନାନା ଗୁରୁତର ଆଲୋଚନା କରିବା । ଏଥିପାଇଁ କେତେକେ ଏରିଷ୍ଟଟଲଙ୍କ ଶିକ୍ଷାକେନ୍ଦ୍ରକୁ 'ଚଲାବୁଲା ଶିକ୍ଷାକେନ୍ଦ୍ର' ବୋଲି କହୁଥିଲେ ଓ ତାଙ୍କର ଶିଷ୍ୟମାନଙ୍କୁ 'ଚଲାବୁଲା ଦାର୍ଶନିକ' କୁହାଯାଉଥିଲା ।

ଏହାର କିଛିଦିନ ପରେ ଏରିଷ୍ଟଟଲ ମହାବୀର ଆଲେକ୍‌ଜାଣ୍ଡରଙ୍କ କୋପଦୃଷ୍ଟିରେ ପଡ଼ିଲେ । ଏରିଷ୍ଟଟଲ କାଲିଷ୍ଥେନ୍‌ସ ନାମକ ତାଙ୍କର ଜଣେ ଦୂର ସମ୍ପର୍କୀୟକୁ ଆଣି ନିଜ ଶିକ୍ଷାକେନ୍ଦ୍ରରେ ଶିକ୍ଷାଦେଇ ମଣିଷ କରିଥିଲେ । ଏରିଷ୍ଟଟଲଙ୍କ ଅନୁରୋଧ କ୍ରମେ ଆଲେକ୍‌ଜାଣ୍ଡର କାଲିଷ୍ଥେନ୍‌ସଙ୍କୁ ନିଜ ଦରବାରରେ ଜଣେ ପଣ୍ଡିତ ହିସାବରେ ନିଯୁକ୍ତ କରିଥିଲେ । କିନ୍ତୁ କାଲିଷ୍ଥେନ୍‌ସ ରାଜଦରବାରରେ ଜଣେ ନମ୍ର ଓ

ବିନୟୀ ସଦସ୍ୟ ଭାବରେ ଆଚରଣ ନ ଦେଖାଇ ଅତି ବେଖାତିର ଭାବରେ ରାଜା ଓ ଅନ୍ୟମାନଙ୍କ ସହିତ ବ୍ୟବହାର ଓ କଥାବାର୍ତ୍ତା କରୁଥିଲେ । ସେ ବେଳେବେଳେ ନିଜ ବ୍ୟକ୍ତିଗତ ମତକୁ ଏତେ ଖୋଲାଖୋଲି ଭାବରେ ବ୍ୟକ୍ତ କରୁଥିଲେ ଯେ ସେ ଅଳ୍ପଦିନ ଭିତରେ ରାଜା ଆଲେକ୍‌ଜାଣ୍ଡରଙ୍କର ଅତି ଅପ୍ରିୟ ହୋଇପଡ଼ିଲେ । ଆଲେକ୍‌ଜାଣ୍ଡର କିପରି ଦୁର୍ଦ୍ଧର୍ଷ ପାରସ୍ୟ ରାଜାଙ୍କ ଭଳି ନିଜକୁ ପୂଜାକରିବା ପାଇଁ ମେସିଡୋନିଆ ରାଜ୍ୟର ପ୍ରଜାମାନଙ୍କୁ ବାଧ୍ୟ କରାଉଛନ୍ତି, ଏହାକୁ ପ୍ରକାଶ୍ୟରେ ବର୍ଣ୍ଣନା କରି ଥରେ ସେ ଆଲେକ୍‌ଜାଣ୍ଡରଙ୍କୁ ଅତୀବ ନିନ୍ଦା କରିଥିଲେ । ଏଥିରେ ଆଲେକ୍‌ଜାଣ୍ଡର କାଲିଷ୍ଟେନ୍ସଙ୍କ ପ୍ରତି ଅତ୍ୟନ୍ତ ରୁଷ୍ଟ ହୋଇ ଉଠିଥିଲେ ।

ଆଲେକ୍‌ଜାଣ୍ଡର କାଲିଷ୍ଟେନ୍ସଙ୍କୁ କିପରି ଶାସ୍ତି ଦେବେ, ତହିଁର ସୁଯୋଗ ଖୋଜୁଥିଲେ । ରାଜାଙ୍କ . ବିରୋଧରେ ଏକ ଜାଲ-ଷଡ଼ଯନ୍ତ୍ରରେ ଲିପ୍ତ କରାଇ ତାଙ୍କୁ ମୃତ୍ୟୁଦଣ୍ଡ 'ଦିଆଇଥିଲେ । ଏହି ଘଟଣାରେ ଏରିଷ୍ଟଟଲ ବଡ଼ ମର୍ମାହତ ହୋଇପଡ଼ିଥିଲେ । ଆଲେକ୍‌ଜାଣ୍ଡର ଓ ଏରିଷ୍ଟଟଲଙ୍କ ଭିତରେ ନାନା କଳହ ଜାତ ହୋଇଥିଲା । କିନ୍ତୁ ଖ୍ରୀଷ୍ଟପୂର୍ବ ୩୨୩ ମସିହାରେ ଆଲେକ୍‌ଜାଣ୍ଡରଙ୍କ ମୃତ୍ୟୁ ହେବାରୁ ସେହି କଳହର ପରିସମାପ୍ତି ହେଲା ।

ଆଲେକ୍‌ଜାଣ୍ଡରଙ୍କ ମୃତ୍ୟୁ ପରେ ଏଥେନିଆନ ଅଧିବାସୀମାନେ ମେସିଡୋନିଆନ ଅଧିବାସୀଙ୍କ ବିରୋଧରେ ବିଦ୍ରୋହ କରିଥିଲେ । ଏହି ବିଦ୍ରୋହ ଫଳରେ ଏରିଷ୍ଟଟଲଙ୍କୁ ବହୁତ କ୍ଷତି ସହିବାକୁ ପଡ଼ିଥିଲା । ବିଦ୍ରୋହୀମାନେ ତାଙ୍କ ଶିକ୍ଷାକେନ୍ଦ୍ରକୁ ଆସି ନାନା ଧମକାଧମକି କରିବାରୁ ସେ ତାଙ୍କ ଶିଷ୍ୟମାନଙ୍କୁ ଧରି ଏଥେନସ

ଛାଡ଼ି ଚାଲସିସ୍‌କୁ ପଳାଇଲେ । ସେଠାରେ ସେ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ରହିଥିଲେ ।

## ଏରିଷ୍ଟଟଲଙ୍କର ବିଭିନ୍ନ ଆବିଷ୍କାର

ଏରିଷ୍ଟଟଲ ତାଙ୍କ ଶିକ୍ଷାକେନ୍ଦ୍ରରେ ଛାତ୍ରମାନଙ୍କୁ ରାଜନୀତି, ଧର୍ମନୀତି, ଦର୍ଶନଠାରୁ ଆରମ୍ଭ କରି ବିଜ୍ଞାନ, ଗଣିତ, ସାହିତ୍ୟ ପର୍ଯ୍ୟନ୍ତ ସବୁଥିରେ ଶିକ୍ଷା ଦେଇଥିଲେ । ଏହି ପ୍ରତ୍ୟେକ ବିଷୟରେ ସେ ଆଶାତୀତ ଭାବରେ ପାରଦର୍ଶିତା ଲାଭ କରିଥିଲେ ଓ ସୁନାମ ଅର୍ଜନ କରିଥିଲେ । ଗଣିତ, ଯନ୍ତ୍ରବିଦ୍ୟା ଓ ବିଜ୍ଞାନରେ ତାଙ୍କର ଗବେଷଣା ଓ ଆବିଷ୍କାର ଖୁବ୍ ପ୍ରସିଦ୍ଧି ଲାଭ କରିଥିଲା । ତାଙ୍କର ସବୁଠାରୁ ଅଧିକ ବ୍ୟୁତ୍ପତ୍ତି ଥିଲା ଜୀବବିଜ୍ଞାନରେ । ଏହି ବିଜ୍ଞାନରେ ତାଙ୍କୁ କେହି ବଳି ଯାଇ ନ ଥିଲେ । ସେ ନାନାପ୍ରକାର ପ୍ରାଣୀଙ୍କୁ ସଂଗ୍ରହ କରି ସେମାନଙ୍କୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରିଥିଲେ ଓ ବୈଜ୍ଞାନିକ ରୀତିରେ ସେଗୁଡ଼ିକର ବର୍ଣ୍ଣନା କରିଥିଲେ ।

ଏରିଷ୍ଟଟଲ ବିଜ୍ଞାନକୁ ପ୍ରଧାନତଃ ଦୁଇ ଶ୍ରେଣୀରେ ବିଭକ୍ତ କରିଥିଲେ, ଯଥା – ତାତ୍ତ୍ୱିକ ବିଜ୍ଞାନ ଓ ପ୍ରାୟୋଗିକ ବିଜ୍ଞାନ । ତାତ୍ତ୍ୱିକ ବିଜ୍ଞାନକୁ ସେ ପୁଣି ତିନୋଟି ଭାଗରେ ବିଭକ୍ତ କରିଥିଲେ ଯଥା – ଦର୍ଶନ, ଗଣିତ ଓ ପଦାର୍ଥବିଦ୍ୟା ।



ଏରିଷ୍ଟଟଲ ପ୍ରାଣିଜଗତକୁ ଦୁଇଭାଗରେ ବିଭକ୍ତ କରିଥିଲେ, ଯଥା – ଲାଲରକ୍ତବାହୀ ପ୍ରାଣୀ ଓ ରକ୍ତ ନ ଥିବା ପ୍ରାଣୀ । ସେ କେତେକ ସାମୁଦ୍ରିକ ଜୀବଙ୍କୁ ଏହି ରକ୍ତ ନ ଥିବା ପ୍ରାଣୀ ଶ୍ରେଣୀରେ ପର୍ଯ୍ୟାୟଭୁକ୍ତ କରିଥିଲେ । ସାମୁଦ୍ରିକ ଜୀବମାନଙ୍କ ଉପରେ ନାନା ଗବେଷଣା କରି ସେ ଯେଉଁ ପର୍ଯ୍ୟବେକ୍ଷଣ ସବୁ ଲେଖି ଯାଇଥିଲେ । ତାହା ତାଙ୍କ ତୀକ୍ଷ୍ଣ ପର୍ଯ୍ୟବେକ୍ଷଣ ଶକ୍ତିର ସ୍ପଷ୍ଟ ପ୍ରମାଣ ଦିଏ ।

ଜୀବନ କଅଣ, ସେ ବ୍ୟାଖ୍ୟା କରିବାକୁ ଯାଇ କହୁଥିଲେ ଯେ, ଜୀବନ ହେଉଛି ଶକ୍ତି, ଯା' ଦ୍ୱାରା ଜୀବନ ଥିବା ପଦାର୍ଥ ନିଜେ ଖାଦ୍ୟ ଗ୍ରହଣ କରି ପୁଷ୍ଟିସାଧନ କରିପାରେ, ବଢ଼ିପାରେ ଓ ପରିଶେଷରେ ଆପେ ଆପେ ମରେ । ଏରିଷ୍ଟଟଲଙ୍କ ଏହି ବ୍ୟାଖ୍ୟା କି ଚମତ୍କାର ଆଧୁନିକ ବିଜ୍ଞାନ ଦୃଷ୍ଟିରୁ ଆଲୋଚନା କଲେ, ତାହା ସ୍ପଷ୍ଟ ଜଣାପଡ଼େ ।

କୁକୁଡ଼ା ଅଣ୍ଡା ଭିତରେ କୁକୁଡ଼ା ଛୁଆ କିପରି ରୂପ ପାଏ, ସେ ଖୁବ୍ ସାବଧାନତାର ସହିତ ଲକ୍ଷ୍ୟ କରିଥିଲେ । ତାଙ୍କର ବିରାଟ ଅଭିଜ୍ଞତା ଫଳରେ କୁକୁଡ଼ାଛୁଆର ହୃଦ୍‌ଯନ୍ତ୍ର କିପରି ସୃଷ୍ଟି ହୁଏ, ଏପରିକି ଅଣ୍ଡା ଭିତରେ ଥିବା ଅବସ୍ଥାରେ କୁକୁଡ଼ାଛୁଆର ହୃତ୍‌ସ୍ପନ୍ଦନ କିପରି ଚାଲେ, ସେ ଜାଣିପାରୁଥିଲେ ।

ଏରିଷ୍ଟଟଲ୍‌ଙ୍କ ପୂର୍ବରୁ ଲୋକମାନଙ୍କର ଧାରଣା ଥିଲା ଯେ ସନ୍ତାନ ସୃଷ୍ଟିରେ ପ୍ରକୃତ ଅଂଶ ଗ୍ରହଣ କରେ ପିତା, ମା' କେବଳ ପିତାର ଶୁକ୍ର କୀଟାଣୁକୁ ଧାରଣ କରି ବଢ଼ାଏ । କିନ୍ତୁ ଏରିଷ୍ଟଟଲ ପ୍ରଚାର କଲେ ଯେ ତା' ଠିକ୍ ନୁହେଁ । ସନ୍ତାନ ଉତ୍ପତ୍ତିରେ ବାପର ଯେତିକି ଭାଗ ରହିଛି, ମା'ର ତା'ଠାରୁ କିଛି କମ୍ ନୁହେଁ ।

ପ୍ରାଣୀର ସୃଷ୍ଟି ବିଷୟରେ ତାଙ୍କର କେତେକ ଭୁଲ୍ ଧାରଣା ଥିଲା । ସେ ଭାବୁଥିଲେ ଯେ ଉଦ୍ଭିଦ ଜଗତରେ ଯେଉଁ କୀଟ

ଦେଖାଯାଏ, ତାହାର ଉତ୍ପତ୍ତି ହୁଏ ଉଦ୍ଭିଦ ଉପରେ ପଡୁଥିବା କାକରରୁ ଓ ମାଛିର ଉତ୍ପତ୍ତି ହୁଏ ପଚାସଢ଼ା ଜିନିଷରୁ ।

ପୁଙ୍ଖାନୁପୁଙ୍ଖ ରୂପେ ଆଲୋଚନା କରିବାପାଇଁ ସେ ପ୍ରାଣୀ ବିଭାଗକୁ ତିନୋଟି ଭାଗରେ ବିଭକ୍ତ କରିଥିଲେ । ପ୍ରଥମ ବିଭାଗରେ ପ୍ରାଣୀଜୀବନର ସାଧାରଣ କଥା, ଦ୍ୱିତୀୟ ବିଭାଗରେ ପ୍ରାଣୀର ବିଭିନ୍ନ ଅଙ୍ଗ ଓ ସେଗୁଡ଼ିକର କାର୍ଯ୍ୟ ଓ ତୃତୀୟ ବିଭାଗରେ ସେ ପ୍ରାଣୀମାନଙ୍କର ବଂଶବୃଦ୍ଧି ଓ ପ୍ରଜନନ ପ୍ରକ୍ରିୟାକୁ ସ୍ଥାନ ଦେଇଥିଲେ । ଏରିଷ୍ଟଟଲଙ୍କ ପ୍ରାୟ ହଜାରେ ସରିକି ଛାତ୍ର ଗ୍ରୀସ୍ ଓ ଏସିଆ ମହାଦେଶର ବହୁ ଅଂଶ ପରିଭ୍ରମଣ କରି ସ୍ଥଳ ଓ ଜଳ ଭାଗରେ ବହୁ ଉଦ୍ଭିଦ ଓ ପ୍ରାଣୀଙ୍କ ବିଷୟରେ ତାଙ୍କୁ ନାନା ତଥ୍ୟ ଯୋଗାଉଥିଲେ ।

ଏରିଷ୍ଟଟଲ ପ୍ରାୟ ପାଞ୍ଚଶ ବିଭିନ୍ନ ଜାତିର ପ୍ରାଣୀ ସମ୍ବନ୍ଧରେ ଉଲ୍ଲେଖ କରି ଯାଇଥିଲେ । ସେଥିମଧ୍ୟରୁ ପ୍ରାୟ ପଚାଶ ଜାତିର ପ୍ରାଣୀର ଶରୀର ବ୍ୟବଚ୍ଛେଦ କରି ସେମାନଙ୍କ ଶରୀର ଅଭ୍ୟନ୍ତରର ଗୂଢ଼ ତତ୍ତ୍ୱ ଆବିଷ୍କାର କରିଥିଲେ । ପ୍ରାଣୀମାନଙ୍କ ଶରୀରର ଅଭ୍ୟନ୍ତର ସମ୍ପର୍କରେ ସେ ବହୁ ନୂତନ ତଥ୍ୟ ପ୍ରତିପାଦନ କରିଥିଲେ । ଏହିସବୁ ଗବେଷଣା ପାଇଁ ଏରିଷ୍ଟଟଲଙ୍କୁ ଜୀବବିଜ୍ଞାନର ଜନକଭାବରେ ବର୍ଣ୍ଣନା କରାଯାଏ । ତାଙ୍କ ରଚିତ 'ପ୍ରାଣୀମାନଙ୍କ ଇତିହାସ' ସେ କାଳରେ ଜୀବବିଜ୍ଞାନରେ ଏକ ବିରାଟ ପୁସ୍ତକ ।

ଭୂପୃଷ୍ଠର ପରିବର୍ତ୍ତନରେ ପୃଥିବୀର ଜଳ ଓ ସ୍ଥଳର ପରିବର୍ତ୍ତନ ଘଟେ ବୋଲି ସେ ସର୍ବପ୍ରଥମେ ଦର୍ଶାଇଥିଲେ । ପୃଥିବୀପୃଷ୍ଠରେ ବେଳେବେଳେ ଯେଉଁ ପର୍ବତ ସୃଷ୍ଟି ହୁଏ, ତାହା ଏହି ପରିବର୍ତ୍ତନ ଯୋଗୁଁ ହୋଇଥାଏ । ଏହି ପର୍ବତ ପୁଣି କାଳର ଗତିରେ କ୍ଷୟପ୍ରାପ୍ତ ହୋଇ କ୍ଷୁଦ୍ରତର ହୋଇଯାଏ । ଏହି ରୀତିରେ ପୃଥିବୀପୃଷ୍ଠର ପରିବର୍ତ୍ତନ କ୍ରିୟା ଲାଗି ରହିଥାଏ । ଏହିଭଳି ଭାବରେ ସେ ଭୂତତ୍ତ୍ୱ ବିଜ୍ଞାନର ପ୍ରଥମ ମୂଳଦୁଆ ପକାଇଥିଲେ ।

ଏରିଷ୍ଟଟଲ ପ୍ରଚାର କରିଥିଲେ ଯେ ପୃଥିବୀର ସବୁ ପଦାର୍ଥ କ୍ଷିତି, ଅପ୍, ତେଜ, ମରୁତ– ଏହି ଚାରୋଟି ଭୂତ ବା ମୌଳିକବସ୍ତୁରୁ ତିଆରି । କିନ୍ତୁ ପୃଥିବୀ ବାହାର ବସ୍ତୁ ଯଥା– ଗ୍ରହ, ନକ୍ଷତ୍ରାଦି ପାଇଁ ସେ ପଞ୍ଚଭୂତ ତଥ୍ୟ ପ୍ରଦାନ କରିଥିଲେ । ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ ସେ ପାର୍ଥିବ ବସ୍ତୁ ଓ ଅପାର୍ଥିବ ବସ୍ତୁ ଭିତରେ ପାର୍ଥକ୍ୟ ସୂଚାଇ ପାରିଥିଲେ । ମନୋବିଜ୍ଞାନରେ ଏରିଷ୍ଟଟଲଙ୍କର ବିଶେଷ ଦକ୍ଷତା ଥିଲା । ତାଙ୍କ ରଚିତ ମନୋବିଜ୍ଞାନ ପୁସ୍ତକ ପୁରାକାଳରେ ପ୍ରସିଦ୍ଧି ଅର୍ଜନ କରିଥିଲା ।

ଏରିଷ୍ଟଟଲ ନିଉଟନଙ୍କ ବହୁପୂର୍ବରୁ ମାଧ୍ୟାକର୍ଷଣ ସମ୍ବନ୍ଧରେ ଏକ ଅସ୍ପଷ୍ଟ ସୂଚନା ଦେଇଥିଲେ । ତାଙ୍କ ଗୁରୁଦେବ ପ୍ଲେଟୋ ସର୍ବ-ପ୍ରଥମେ ଏହିଭଳି ଏକ ତଥ୍ୟର ଆଭାସ ଦେଇଥିଲେ । ପ୍ଲେଟୋ କହୁଥିଲେ ଯେ କୌଣସି ପଦାର୍ଥର ନିମ୍ନକୁ ଗତି କରିବାର ଅର୍ଥ ହେଉଛି, ପୃଥିବୀର କେନ୍ଦ୍ର ଆଡ଼କୁ ଟାଣିହେବା । ଯେକୌଣସି ବସ୍ତୁର ସମଗୋତ୍ରୀୟ ବସ୍ତୁ ଆଡ଼କୁ ଆକୃଷ୍ଟ ହେବାର ପ୍ରକୃତି ଅଛି । ଏହି ହେତୁରୁ ପଥରକୁ ଉପରକୁ ଫୋପାଡ଼ିଲେ ଏହା ପୃଥିବୀ ଉପରେ ପଡ଼େ, କାରଣ ଏହା ପୃଥିବୀ ଦ୍ୱାରା ଆକୃଷ୍ଟ ହୁଏ । କିନ୍ତୁ ବାଷ୍ପ ଉପରକୁ ଉଠିଯାଏ, କାରଣ ଉପରେ ଯେଉଁ ବିରାଟ ବାଷ୍ପଭଣ୍ଡାର ଅଛି, ସେ ଆଡ଼କୁ ଏହା ଆକୃଷ୍ଟ ହୁଏ ।

ଏରିଷ୍ଟଟଲ ଗୁରୁଙ୍କର ଏହି ମତକୁ ଖଣ୍ଡନ କରି ଏହି ମତଠାରୁ ପୃଥକ ମତ ଦେଇଥିଲେ । ସେ ମୋଟାମୋଟି ଦୁଇପ୍ରକାର ବସ୍ତୁର ସୂଚନା ଦେଇଥିଲେ, ଯଥା– ଭାରୀ ପଦାର୍ଥ ଓ ହାଲୁକା ପଦାର୍ଥ । ଭାରୀ ପଦାର୍ଥର ତଳକୁ ଯିବାର ପ୍ରବୃତ୍ତି ଓ ହାଲୁକା ପଦାର୍ଥର ଉପରକୁ ଉଠିବାର ପ୍ରବୃତ୍ତି ଥାଏ । ତେଣୁ କେତେକ ପଦାର୍ଥ ତଳକୁ ଖସିପଡ଼ନ୍ତି ଓ ଅନ୍ୟଗୁଡ଼ିକ ତଳକୁ ଖସିପଡ଼ନ୍ତି ନାହିଁ । ଏରିଷ୍ଟଟଲଙ୍କ

ଏହି ତଥ୍ୟଟି ପ୍ରକୃତ ସତ୍ୟଠାରୁ ଯଥେଷ୍ଟ ଦୂରରେ ଥିଲେ ମଧ ଏହା ସେ ଯୁଗରେ ବେଶ୍ ଲୋକପ୍ରିୟ ହୋଇ ପାରିଥିଲା ।

ଏରିଷ୍ଟଟଲ ସାଧାରଣ ଗତି ସଂପର୍କରେ ଗୋଟିଏ ତଥ୍ୟ ଦେଇଥିଲେ । ତାଙ୍କ ମତରେ ଗତି ଦୁଇପ୍ରକାର, ଯଥା– ସରଳ-ରୈଖିକ ଗତି ଓ ବୃତ୍ତାକାର ଗତି । ପୃଥିବୀପୃଷ୍ଠର ବସ୍ତୁ ସରଳ-ରୈଖିକ ଗତି କରନ୍ତି ଓ ଆକାଶମଣ୍ଡଳର ବସ୍ତୁଗୁଡ଼ିକ ବୃତ୍ତାକାର ଗତି କରନ୍ତି ।

ପତିତ ବସ୍ତୁର ଗତି ସମ୍ବନ୍ଧରେ ସେ ମଧ ଏକ ତଥ୍ୟ ଦେଇଥିଲେ । ତାଙ୍କ ମତରେ ପତିତ ବସ୍ତୁର ଓଜନ ଉପରେ ଏହାର ତ୍ୱରାନ୍ୱିତ ବେଗ ନିର୍ଭର କରେ । ବସ୍ତୁ ଯେତେ ବଡ଼ ଓ ଭାରୀ ହେବ ତାହାର ତ୍ୱରାନ୍ୱିତ ବେଗ ସେତେ ବଢ଼ିବ । ବଡ଼ ଆଶ୍ଚର୍ଯ୍ୟର କଥା ଏହି ତଥ୍ୟଟିକୁ ଅତି ସହଜରେ ଭୁଲ ବୋଲି ପ୍ରମାଣ କରି ଦେଇଥିଲେ ମଧ ଏହା ବହୁ ବର୍ଷଧରି ନିରାଟ ସତ୍ୟ ବୋଲି ପରିଗଣିତ ହୋଇଥିଲା ।

ବିଶ୍ୱର କେନ୍ଦ୍ର ପୃଥିବୀ ବୋଲି ସେ ଭାବୁଥିଲେ । ପୃଥିବୀ ଚାରି ପାଖରେ ସୂର୍ଯ୍ୟ, ଚନ୍ଦ୍ର ଆଦି ପ୍ରଦକ୍ଷିଣ କରୁଛନ୍ତି । ସୂର୍ଯ୍ୟଭଳି ଚନ୍ଦ୍ରର ନିଜର ଆଲୋକ ଅଛି ବୋଲି ଏରିଷ୍ଟଟଲ ମତ ଦେଇଥିଲେ ।

ପୃଥିବୀପୃଷ୍ଠରେ ଶୂନ୍ୟ ରହିପାରିବନି ବୋଲି ତାଙ୍କର ବିଶ୍ୱାସ ଥିଲା । ସେଥିପାଇଁ ସେ ପ୍ରଚାର କରିଥିଲେ ପ୍ରକୃତି ତା' ଭିତରେ ଶୂନ୍ୟକୁ ସ୍ଥାନ ଦିଏନି । ତାଙ୍କର ଆଉ ଏକ ମତ ହେଉଛି ପଦାର୍ଥଗୁଡ଼ିକ ସ୍ଥିର ଅବସ୍ଥାରେ ଥାଆନ୍ତି । ସେଗୁଡ଼ିକୁ ଗତିଶୀଳ କରିବାକୁ ହେଲେ ସେମାନଙ୍କ ଉପରେ ବଳପ୍ରୟୋଗ ଆବଶ୍ୟକ ।

ଏରିଷ୍ଟଟଲଙ୍କ ମତରେ ପୃଥିବୀ ସ୍ଥିର । ଏହା ଚାରିପାଖରେ ସୂର୍ଯ୍ୟ, ଗ୍ରହମାନେ ପରିଭ୍ରମଣ କରୁଛନ୍ତି । ତାଙ୍କର ଏହି ମତବାଦ

ସର୍ବସାଧାରଣରେ ଏତେ ଆଦୃତ ହୋଇଥିଲା ଯେ ଏହା ବିରୋଧରେ କେହି ମତ ଦେଉ ନ ଥିଲେ । ପରବର୍ତ୍ତୀ କାଳରେ ଏହି ତଥ୍ୟ ବିରୋଧରେ ମତ ଦେଇ ବହୁ ବୈଜ୍ଞାନିକ ପ୍ରାଣ ହରାଇଛନ୍ତି ଓ ଅତ୍ୟଧିକ ନିର୍ଯ୍ୟାତନା ପାଇଛନ୍ତି ।

ପୃଥିବୀର ଆକାର ଗୋଲ ବୋଲି ସେ କହୁଥିଲେ । ହାତରେ କରରେଖା ଓ ଗ୍ରହ ନକ୍ଷତ୍ର ଅବସ୍ଥିତିର ଶୁଭାଶୁଭ ବିଚାର କରିବାରେ ସେ ପାରଙ୍ଗମ ଥିଲେ ।

ଏରିଷ୍ଟଟଲଙ୍କ ଏହି ତଥ୍ୟଗୁଡ଼ିକରୁ ଅନେକ ପ୍ରମାଦଯୁକ୍ତ ଥିଲେ ମଧ୍ୟ ସେଗୁଡ଼ିକ ପ୍ରାୟ ଦୁଇହଜାର ବର୍ଷଧରି ନିରାଟ ସତ୍ୟ ବୋଲି ପରିଗଣିତ ହେଉଥିଲା ଓ ଏହି ସମୟ ମଧ୍ୟରେ ପୃଥିବୀପୃଷ୍ଠରେ ଯେତେ ମନୀଷୀ ଜନ୍ମଗ୍ରହଣ କରିଥିଲେ, ଏହି ତଥ୍ୟଗୁଡ଼ିକ ସେମାନଙ୍କ ଭାବଧାରା ଉପରେ ବିରାଟ ପ୍ରଭାବ ପକାଇ ପାରିଥିଲା ।

ଏରିଷ୍ଟଟଲ ଯେ ବିଜ୍ଞାନରେ କେବଳ ନୂତନ ଭାବଧାରା ଦେଇଯାଇଥିଲେ, ତା' ନୁହେଁ, ଦର୍ଶନ ଓ ନୀତିଶାସ୍ତ୍ରରେ ତାଙ୍କ ଦାନ ମଧ୍ୟ ଅତୁଳନୀୟ । ସେ ବହୁ ଉପଦେଶ ଓ ନୀତିବାକ୍ୟ ମଧ୍ୟ ସାଧାରଣ ଲୋକଙ୍କ ପାଇଁ ଦେଇ ଯାଇଛନ୍ତି, ଏସବୁକୁ ଛାଡ଼ି ଜୀବବିଜ୍ଞାନ, ପ୍ରାକୃତିକବିଜ୍ଞାନ, ନୀତିଶାସ୍ତ୍ର, ତର୍କଶାସ୍ତ୍ର, ରାଜନୀତି, ଦର୍ଶନ ଓ ସାହିତ୍ୟରେ ସେ ଯେଉଁସବୁ ପୁସ୍ତକ ପ୍ରଣୟନ କରିଯାଇଛନ୍ତି, ସେଗୁଡ଼ିକୁ ମାନବିକ ସଭ୍ୟତାର ଅମୂଲ୍ୟ ସଂପଦ ବୋଲି କହିଲେ ଅତ୍ୟୁକ୍ତି ହେବନି ।

## ଏରିଷ୍ଟଟଲଙ୍କ ଶେଷ ଜୀବନ ଓ ତାଙ୍କ ପରେ

ଏରିଷ୍ଟଟଲ ଦୁଇଥର ବିବାହ କରିଥିଲେ । ପ୍ରଥମ ଥର ସେ ବିବାହ କରିଥିଲେ ରାଜକନ୍ୟା ପିଥିଆସ୍‌ଙ୍କୁ । ପିଥିଆସ୍‌ଙ୍କ ମୃତ୍ୟୁ

ପରେ ସେ ଆଉ ଥରେ ବିବାହ କଲେ ହାରପିଲିସଙ୍କୁ । ହାରପିଲିସ ବଞ୍ଚି ଥାଉଁ ଥାଉଁ ଖ୍ରୀଷ୍ଟପୂର୍ବ ୨୯୬ ମସିହାରେ ଏରିଷ୍ଟଟଲଙ୍କ ମୃତ୍ୟୁ ହୋଇଥିଲା । ସେତେବେଳେ ଏରିଷ୍ଟଟଲଙ୍କୁ ୬୨ ବର୍ଷ ବୟସ ହୋଇଥିଲା । ଏରିଷ୍ଟଟଲଙ୍କ ପ୍ରଥମ ସ୍ତ୍ରୀଙ୍କ ପକ୍ଷରୁ କିଛି ସନ୍ତାନସନ୍ତତି ନ ଥିଲେ । ଦ୍ୱିତୀୟ ସ୍ତ୍ରୀଙ୍କ ପକ୍ଷରୁ ତାଙ୍କର ଗୋଟିଏ ପୁଅ ଓ ଗୋଟିଏ ଝିଅ ହୋଇଥିଲେ । ଏରିଷ୍ଟଟଲ ତାଙ୍କ ପୁଅ ନାମ ରଖିଥିଲେ ନିକୋମେକସ୍ ।

ଏରିଷ୍ଟଟ୍ଲଙ୍କର ଏ ଦୁଇଟି ବିବାହ ଖୁବ୍ ସୁଖପୂର୍ଣ୍ଣ ହୋଇଥିଲା । ସେ ମରିବା ପୂର୍ବରୁ ଉଇଲ କରିଦେଇ ଯାଇଥିଲେ ଯେ ସେ ମଲେ ତାଙ୍କର ଓ ପୂର୍ବ ସ୍ତ୍ରୀ ପିଥିଆସ୍ଙ୍କର ବ୍ୟବହୃତ ଜିନିଷପତ୍ର, ପୋଷାକପତ୍ର ଆଦି ତାଙ୍କ ମୃତ୍ୟୁ ସ୍ତମ୍ଭରେ ରଖାହେବ । ଦ୍ୱିତୀୟ ସ୍ତ୍ରୀ ହାରପିଲିସ ସ୍ୱାମୀଙ୍କ ଶେଷ ଇଚ୍ଛାନୁଯାୟୀ ତାହା କରିଥିଲେ । ଏରିଷ୍ଟଟଲ ଖୁବ୍ ସ୍ୱଚ୍ଛଳ ଅବସ୍ଥାରେ ମରିଥିବାର ପ୍ରମାଣ ମିଳେ । କାରଣ ସେ ମଲାପରେ ତାଙ୍କର ବହୁ ଧନରତ୍ନ ତାଙ୍କର ବନ୍ଧୁବାନ୍ଧବ ଓ ଅନୁଚରମାନଙ୍କ ଭିତରେ ବାଣ୍ଟି ଦିଆଯାଇଥିଲା ।

## ଏରିଷ୍ଟଟଲଙ୍କ ଶିଷ୍ୟ ଥିଓଫାର୍ସଷ୍ଟସ୍

ଏରିଷ୍ଟଟଲଙ୍କ ମୃତ୍ୟୁପରେ ତାଙ୍କ ଶିକ୍ଷାକେନ୍ଦ୍ରର ଭାର ପଡ଼ିଲା ତାଙ୍କ ଶିଷ୍ୟ ଥିଓଫାର୍ସଷ୍ଟସ୍ଙ୍କ ଉପରେ । ଥିଓଫାର୍ସଷ୍ଟସ୍ ଖ୍ରୀ:ପୂ: ୩୭୦ ମସିହାରେ ଜନ୍ମଗ୍ରହଣ କରିଥିଲେ । ସେ ଖଣିଜ ବିଦ୍ୟା ଓ ଉଦ୍ଭିଦ ବିଜ୍ଞାନରେ ବହୁ ଗବେଷଣା କରିଥିଲେ । ଉଦ୍ଭିଦର ଜୀବନ ପ୍ରଣାଳୀ ସେ ଖୁବ୍ ଭଲଭାବରେ ଅନୁଧ୍ୟାନ କରି ଉଦ୍ଭିଦଗୁଡ଼ିକୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରିଥିଲେ । କେତେକଙ୍କ ମତରେ ମହାବୀର ଆଲେକ୍ଜାଣ୍ଡରଙ୍କ ସହିତ ଯେଉଁ ବୈଜ୍ଞାନିକ ଦଳ ପ୍ରାଚ୍ୟ ଦେଶ

ଆଡ଼କୁ ଯାଇଥିଲେ, ସେମାନେ ଭାରତବର୍ଷରୁ ଯେଉଁସବୁ ବିଜ୍ଞାନ ବିଷୟକ ପୁସ୍ତକ ଘେନି ଆସିଥିଲେ, ସେଗୁଡ଼ିକୁ ପଢ଼ି ଥିଓଫାର୍ସକସ୍ ନିଜ ଆବିଷ୍କାରରେ ପ୍ରଭାବିତ ହୋଇଥିଲେ । ଏହା କେତେ ଦୂର ସତ୍ୟ କହିହେବନି, ତେବେ ଏହା ନିଶ୍ଚିତ ଯେ ଆଲେକ୍‌ଜାଣ୍ଡର ଭାରତ ଜୟ କରି ଫେରିଯିବା ବେଳେ ସେ ଭାରତରୁ ବହୁ ପୋଥି ଓ ବିଜ୍ଞାନବିଷୟକ ସନ୍ଦର୍ଭ ଘେନିଯାଇଥିଲେ ।

ଥିଓଫାସ୍ତ୍ତସ୍ ଉଦ୍ଭିଦ ଜଗତ ସମ୍ବନ୍ଧରେ ବହୁ ଗବେଷଣା କରିଥିଲେ । ଉଦ୍ଭିଦଗୁଡ଼ିକୁ ବର୍ଗୀକରଣ ଓ ଶ୍ରେଣୀକରଣ କରି ସେମାନଙ୍କ ଅଙ୍ଗପ୍ରତ୍ୟଙ୍ଗ ଓ ସେଗୁଡ଼ିକର କାର୍ଯ୍ୟ ସମ୍ବନ୍ଧରେ ବହୁ ଗବେଷଣାପୂର୍ବକ ନାନା ନୂତନ ତଥ୍ୟ ବିଜ୍ଞାନ-ଜଗତକୁ ଦେଇଯାଇଥିଲେ । ବଡ଼ ବଡ଼ ଉଦ୍ଭିଦର ଜନନ ପ୍ରକ୍ରିୟା କିପରି ହୁଏ, ସେ ଲକ୍ଷ୍ୟ କରି ଜାଣିଥିଲେ । କିନ୍ତୁ ଏରିଷ୍ଟଟଲ ଏହାକୁ ବିଶ୍ୱାସ କରୁ ନ ଥିବାରୁ ଏହା ବହୁଦିନ ଧରି ଲୋକଲୋଚନ ଅନ୍ତରାଳରେ ରହିଯାଇଥିଲା । ଇଉରୋପରେ ଅନ୍ଧକାର ଯୁଗ ପରେ ଯେଉଁ ନୂତନ ଜାଗରଣ ଦେଖାଦେଲା, ସେତିକିବେଳେ ଏଣ୍ଡ୍ରିୟା ସେସାଲପିନି ଥିଓଫାର୍ସଷ୍ଟସ୍‌ଙ୍କ ଏହି ମତକୁ ପୁନରୁଦ୍ଧାର କରି ପ୍ରଚାର କରିଥିଲେ ।

ଥିଓଫାର୍ସଷ୍ଟସ୍‌ଙ୍କ ମୃତ୍ୟୁପରେ ଏରିଷ୍ଟଟଲଙ୍କ ଶିକ୍ଷାକେନ୍ଦ୍ରର ତତ୍ତ୍ୱାବଧାରକ ହେଲେ ତାଙ୍କ ଶିଷ୍ୟ ଷ୍ଟ୍ରେଟନ୍ । ସେ ଜଣେ ପଦାର୍ଥ ବିଦ୍ୟାବିତ୍ ଥିଲେ । ତାଙ୍କ ପରେ ଶିକ୍ଷାକେନ୍ଦ୍ରର ଅବସ୍ଥା ଅତ୍ୟଧିକ ଶୋଚନୀୟ ହୋଇପଡ଼ିଲା । ଏହି ଶିକ୍ଷାକେନ୍ଦ୍ରକୁ ଆଉ କେହି ଅଧ୍ୟୟନ କରିବାପାଇଁ ଆସିଲେନି । ପରିଶେଷରେ ଖ୍ରୀଷ୍ଟାବ୍ଦ ତୃତୀୟ ଶତାବ୍ଦୀରେ ଏହା ପୂରାପୂରି ଲୋପ ପାଇଗଲା ।

অষ্টম অধ্যায়

# ଜ୍ୟାମିତି ଶାସ୍ତ୍ରର ପ୍ରଣେତା ଇଉକ୍ଲିଡ୍

ଏରିଷ୍ଟଟଲଙ୍କ ମୃତ୍ୟୁ ପରେ ତାଙ୍କ ଏଥେନସ୍ ଶିକ୍ଷାକେନ୍ଦ୍ରର ଧୀରେ ଧୀରେ ପତନ ହେଲା ସତ, କିନ୍ତୁ କିଛି ବର୍ଷ ପରେ ସେହି ଏଥେନ୍ସ ଶିକ୍ଷାକେନ୍ଦ୍ରରୁ ବାହାରିଲେ ଆଉ ଜଣେ ଯୁଗଜନ୍ମା ବୈଜ୍ଞାନିକ, ତାଙ୍କ ନାଁ ହେଉଛି ଇଉକ୍ଲିଡ୍ ।



ଇଉକ୍ଲିଡ୍

ଖ୍ରୀ:ପୂ: ୩୩୦ ମସିହାରେ ଇଉକ୍ଲିଡ ଗ୍ରୀସ୍‌ଦେଶର ରାଜଧାନୀ ଏଥେନସ୍ ନଗରୀରେ ସମ୍ଭବତଃ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରେ ଲେଖାପଢ଼ା ଶେଷ କରି ସେ ଗ୍ରୀସ୍ ଅଧୀନସ୍ଥ ମିଶର ଦେଶକୁ ଚାଲିଗଲେ । ମହାବୀର ଆଲେକ୍‌ଜାଣ୍ଡର ମିଶର ଜୟ କରି ନୀଳ ନଦୀ ମୁହାଣରେ ତାଙ୍କ ନାମ ଅନୁସାରେ ଗୋଟିଏ ସୁନ୍ଦର ସହର ବସାଇଥିଲେ । ସେହି ସହରଟିର ନାମ ହେଉଛି ଆଲେକଜାଣ୍ଡ୍ରିୟା । ପ୍ରତିଷ୍ଠା ପାଇବାର ଅଳ୍ପଦିନ ଭିତରେ ସେହି ସହରଟି ଏକ ସମୃଦ୍ଧିଶାଳୀ ନଗର ତଥା ବନ୍ଦରରେ ପରିଣତ ହେଲା । ଆଲେକ୍‌ଜାଣ୍ଡରଙ୍କ ମୃତ୍ୟୁ ପରେ ଯେତେବେଳେ ତାଙ୍କ ସାମ୍ରାଜ୍ୟ ତାଙ୍କ ସେନାପତିମାନଙ୍କ ଭିତରେ ଭାଗବଣ୍ଟରା ହୋଇଗଲା, ସେତେବେଳେ ମିଶର ପଡ଼ିଲା ତାଙ୍କର ଜଣେ ଶକ୍ତିଶାଳୀ ସେନାପତି ଟଲେମୀ ମେଗସ୍‌ଙ୍କ ହାତରେ । ସେ ମିଶରର ରାଜା ହେଲେ । ଟଲେମୀ ଶିକ୍ଷା ଓ ବିଜ୍ଞାନର ଅତି ପ୍ରିୟ ଥିଲେ । ସେ ଚାରିଆଡୁ ଦାର୍ଶନିକ ଓ ଜ୍ଞାନୀ ଲୋକମାନଙ୍କୁ ଆଣି ନିଜ ଦରବାରରେ ରଖାଇଥିଲେ । ତାଙ୍କ ପରେ ତାଙ୍କ ପୁଅ ଟଲେମୀ ଫିଲାଡେଲଫସ୍ ମିଶରର ରାଜା ହେଲେ । ସେ ମଧ୍ୟ ପିତାଙ୍କ ଭଳି ଶିକ୍ଷାପ୍ରିୟ । ସେ ଆଲେକ୍‌ଜାଣ୍ଡ୍ରିଆଠାରେ ଏକ ବିରାଟ ପୁସ୍ତକାଗାର, ପର୍ଯ୍ୟବେକ୍ଷଣାଗାର ଓ ବିଜ୍ଞାନର ଏକ ଶିକ୍ଷାକେନ୍ଦ୍ର ବସାଇଲେ । ସେ ଚାରିଆଡୁ ଜ୍ଞାନୀ ଲୋକମାନଙ୍କୁ ଆଣି ଏହି ଶିକ୍ଷାକେନ୍ଦ୍ରରେ ରଖାଇଲେ । ଏଠାରେ ଗଣିତ, ବିଜ୍ଞାନ, ଯନ୍ତ୍ରବିଦ୍ୟା ଆଦିରେ ଉଚ୍ଚଶିକ୍ଷା ଦିଆଯାଉଥିଲା । ଆଲେକ୍‌ଜାଣ୍ଡ୍ରିଆର ଏହି ବିଖ୍ୟାତ ଶିକ୍ଷାକେନ୍ଦ୍ରରେ ଇଉକ୍ଲିଡ୍ ଜଣେ ନାମଜାଦା ଅଧ୍ୟାପକ ଭାବରେ ଯୋଗ ଦେଇଥିଲେ । ସେତେବେଳେ ମିଶରର ରାଜା ଥିଲେ ଟଲେମୀ ମେଗସ୍ । ଇଉକ୍ଲିଡ୍ ତାଙ୍କ ରାଜ ଦରବାରରେ ରାଜପଣ୍ଡିତ

ଥିଲେ ଓ ଦରବାରରେ ଥିବା ପଣ୍ଡିତମାନଙ୍କ ଭିତରେ ସେ ଥିଲେ ପ୍ରସିଦ୍ଧତମ । ଇଉକ୍ଲିଡ୍‌ଙ୍କ ଗଣିତ ଚର୍ଚ୍ଚା ପରବର୍ତ୍ତୀକାଳରେ ବହୁ ବୈଜ୍ଞାନିକ ଯଥା ଏରାଟୋସ୍‌ଥେନିସ୍, ଆରକେମିଡିସ, ଟଲେମୀ ଆଦିଙ୍କୁ ବିଜ୍ଞାନ ଚର୍ଚ୍ଚା ପାଇଁ ପ୍ରେରଣା ଦେଇଥିଲା ।

ପ୍ରୋକ୍ଲୋସଙ୍କ ମତରେ ଇଉକ୍ଲିଡ୍‌ଙ୍କ ବ୍ୟବହାର ଖୁବ୍ ମଧୁର ଥିଲା । ରାଜା ଟଲେମୀ ସେଥିପାଇଁ ତାଙ୍କୁ ଖୁବ୍ ଭଲ ପାଉଥିଲେ । ରାଜା ଟଲେମୀ ଦିନେ ଇଉକ୍ଲିଡ୍‌ଙ୍କୁ ପଚାରିଲେ, "ଜ୍ୟାମିତି ଶିକ୍ଷା କରିବା ପାଇଁ ତାଙ୍କ ବହି ଛଡ଼ା କ'ଣ ଆଉ କିଛି ସହଜ ଉପାୟ ନାହିଁ ?" ଇଉକ୍ଲିଡ୍ ତା'ର ଉତ୍ତରରେ ବିନୀତ ଭାବରେ ପରିହାସ ଛଳରେ କହିଥିଲେ, "ନାଇଁ ମଣିମା, ଜ୍ୟାମିତି ଶିକ୍ଷା କରିବା ପାଇଁ ସେପରି କିଛି ରାଜକୀୟ ପଥ ନାହିଁ ।" ଏଥିରୁ ଇଉକ୍ଲିଡ୍‌ଙ୍କ ନମ୍ର ସ୍ୱଭାବ ଓ ତୀକ୍ଷ୍ଣ ବୁଦ୍ଧିମତ୍ତାର ସ୍ପଷ୍ଟ ପରିଚୟ ମିଳେ ।

ଆମ୍ଭେମାନେ ଆଜିକାଲି ଯେଉଁ ଜ୍ୟାମିତି ବହି ପଢୁ, ସେଇ ଜ୍ୟାମିତି ବହି ହେଉଛି ମନୀଷୀ ଇଉକ୍ଲିଡ୍‌ଙ୍କ ଅମୂଲ୍ୟ ଦାନ । ତାଙ୍କ ଜ୍ୟାମିତି ବହି ସାରା ପୃଥିବୀର ସବୁ ଦେଶରେ ଆଜକୁ ହଜାର ହଜାର ବର୍ଷ ହେଲା ପଢ଼ା ହୋଇ ଆସୁଛି । ଇଉକ୍ଲିଡ୍ ଯେ ଜ୍ୟାମିତିର ପ୍ରକୃତ ଜନ୍ମଦାତା, ତାହା ନୁହେଁ । ଜ୍ୟାମିତି ଶାସ୍ତ୍ରକୁ କିଏ ପ୍ରଥମେ ଆବିଷ୍କାର କରିଥିଲେ ଜଣା ନ ଥିଲେ ହେଁ ଇଉକ୍ଲିଡଙ୍କ ଏ ଦିଗରେ ଦାନ ଅନ୍ୟାନ୍ୟ ସାଧାରଣ ଇଉକ୍ଲିଡ୍ ଯାହା ଦାନକରି ଯାଇଛନ୍ତି, ଗ୍ରୀକ୍ ବୈଜ୍ଞାନିକ ଥେଲସ୍, ପିଥାଗୋରାସ୍, ଡିଓସର୍, ହିପୋକ୍ରେଟାସ୍, ପ୍ଲେଟୋ ଆଦିଙ୍କର ଅମୂଲ୍ୟ ଦାନ ରହିଛି । ଇଉକ୍ଲିଡ୍‌ଙ୍କ ବାହାଦୁରୀ ହେଉଛି, ଉପରୋକ୍ତ ବିଭିନ୍ନ ବୈଜ୍ଞାନିକଙ୍କ ଅବଦାନଗୁଡ଼ିକ ଠିକ୍ ଭାବରେ ସଜାଡ଼ି, ସେଥି ସହିତ ନିଜ ଦାନକୁ

ଯୋଗକରି ସାଧାରଣ ଲୋକଙ୍କ ବୋଧଗମ୍ୟ ହେଲାଭଳି ଭାଷା ଓ ରୀତିରେ ପ୍ରଦାନ କରିବା । ସେଥିପାଇଁ ତାଙ୍କ ବହି ପୃଥିବୀର ଏକ ଅମୂଲ୍ୟ ସମ୍ପଦ ଭାବରେ ରହିଆସିଛି ।

ଇଉକ୍ଲିଡ୍‌ଙ୍କ ଜ୍ୟାମିତି ବହି 'ଏଲିମେଣ୍ଟସ' ଭାବରେ ଖ୍ୟାତ । ଏହା ତେରଗୋଟି ଖଣ୍ଡରେ ବିଭକ୍ତ । ସବୁଗୁଡ଼ିକ ଯେ ଇଉକ୍ଲିଡ୍ ରଚନା କରିଥିଲେ ତାହା ନୁହେଁ । ଏହାର କେତେକ ଅଂଶ ପରେ ତାଙ୍କ ଛାତ୍ରମାନେ ଏଥିରେ ଯୋଗ କରିଛନ୍ତି । ଏହି ଜ୍ୟାମିତି ବହିର ପ୍ରଥମ ଚାରିଖଣ୍ଡ ତ୍ରିଭୁଜ, ବୃତ୍ତ, ବହୁଭୁଜ, ସମାନ୍ତରାଳ ସରଳରେଖା ଓ ପିଥାଗୋରାସ୍ ଉପପାଦ୍ୟ ନେଇ ଗଠିତ । ପଞ୍ଚମ ଖଣ୍ଡରେ ଅଛି ଅନୁପାତ ତତ୍ତ୍ୱ । ଷଷ୍ଠ ଖଣ୍ଡରେ ଅନୁପାତ ତତ୍ତ୍ୱର ଉଚ୍ଚତର ଆଲୋଚନା କରାଯାଇଛି । ସପ୍ତମଠାରୁ ନବମ ଖଣ୍ଡ ଭିତରେ ଅଛି ପୂର୍ଣ୍ଣସଂଖ୍ୟାର ବିଭିନ୍ନ ଧର୍ମର ଆଲୋଚନା । ଦଶମ ଖଣ୍ଡରେ ଅଛି ଜଟିଳ ଆମୂଳକ ରାଶିର ଆଲୋଚନା । ଏକାଦଶ ଠାରୁ ତ୍ରୟୋଦଶ ଖଣ୍ଡ ଭିତରେ ଅଛି ପିରାମିଡ, ସିଲିଣ୍ଡର, କୋନ୍, ଗୋଲକ ଆଦି ଘନବସ୍ତୁର ପ୍ରକୃତି ସମ୍ପର୍କରେ ବିବିଧ ଆଲୋଚନା ।


ଇଉକ୍ଲିଡ୍‌ଙ୍କ ଜ୍ୟାମିତିରେ ବିଭିନ୍ନ ଅଙ୍କନ

ଜ୍ୟାମିତି ବ୍ୟତୀତ ଅପ୍‌ଟିକ୍‌ସ ଓ ଡାଟା ନାମକ ଆଉ ଦୁଇଟି ଗ୍ରନ୍ଥ ସେ ରଚନା କରିଥିଲେ । କିନ୍ତୁ ଦୁଃଖର ବିଷୟ ସେହି ଦୁଇଟି ଗ୍ରନ୍ଥର

କୌଣସି ସତ୍ତା ମିଳୁନି; ସମ୍ଭବତଃ କାଳର ସ୍ରୋତରେ ନଷ୍ଟ ହୋଇଯାଇଅଛି ।

ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ଇଉକ୍ଲିଡ୍‌ଙ୍କ ଜ୍ୟାମିତି ପୁସ୍ତକରେ କେତେକ ପ୍ରମାଦ ଥିବା କଥା ଧରାପଡ଼ିଲା । ସେଗୁଡ଼ିକ ସଂଶୋଧିତ ହୋଇଯାଇଅଛି । କିନ୍ତୁ ମୂଳଗ୍ରନ୍ଥ ଠିକ୍ ସେହିପରି ରହିଛି, କାରଣ ସେଥିରେ ସଂଶୋଧନର ଆବଶ୍ୟକତା ଦରକାର ପଡ଼ି ନାହିଁ ।

ଜ୍ୟାମିତିର ଆବଶ୍ୟକତା ମିଶର ଦେଶରେ ଅତ୍ୟନ୍ତ ବେଶି ଉପଲବ୍ଧି କରାଯାଇଥିଲା । ସମ୍ଭବତଃ ଜ୍ୟାମିତିର ଆରମ୍ଭ ମିଶର ଦେଶରୁ । ମିଶର ଦେଶରେ ନୀଳନଦୀର ବନ୍ୟାରେ ବର୍ଷକୁ ବର୍ଷ ବହୁ ଜମି ଧୋଇ ହୋଇଯାଏ । ଧୋଇଆ ଜମିର କର ମିଶର ସରକାର ଛାଡ଼ି ଦେଉଥିଲେ । କାହାର କେତେ କର ରିହାତି ଜାଣିବା ପାଇଁ ଜମିର ପରିମାଣ ମାପିବାକୁ ପଡୁଥିଲା । ସରକାରୀ କର୍ମକର୍ତ୍ତାମାନେ ଯେଉଁ କର ରିହାତି ଜମି ମାପ କରିଦେଉଥିଲେ, ତାହା କେତେଦୂର ଠିକ୍ କରଦାତାମାନେ ଜାଣିବାକୁ ଚାହୁଁଥିଲେ । ସେଥିପାଇଁ ଜ୍ୟାମିତିକ ସୂତ୍ରର ଆବଶ୍ୟକତା ଥିଲା । ସମ୍ଭବତଃ ଏହି ଆବଶ୍ୟକତାରୁ ଜ୍ୟାମିତି ସୂତ୍ରର ସୃଷ୍ଟି । ଇଉକ୍ଲିଡ୍‌ଙ୍କ ସମୟବେଳକୁ ଜ୍ୟାମିତିର ଗୁଡ଼ିଏ ସୂତ୍ର ବ୍ୟବହାର କ୍ଷେତ୍ରକୁ ଆସି ଯାଇଥିଲା । ସେଗୁଡ଼ିକୁ ଏକାଠି କରି ଗୋଟିକ ପରେ ଗୋଟିଏ ସଜ୍ଜିତ କରି ପ୍ରକାଶ କରିବା କିଛି କମ୍ ବଡ଼ କଥା ନୁହେଁ । ସେ ଯୁଗର ଏହି କାର୍ଯ୍ୟ ଏକ ବିରାଟ କାର୍ଯ୍ୟ ବୋଲି ପରିଗଣିତ ହେବା କଥା । ଇଉକ୍ଲିଡ୍‌ଙ୍କ ବହି ସାରା ପୃଥିବୀରେ ଯେତେ ବିକ୍ରୟ ହୁଏ, ବାଇବେଲକୁ ଛାଡ଼ିଦେଲେ ଅନ୍ୟ କୌଣସି ବହିର ସେତେ ବିକ୍ରୟ ନାହିଁ ।

କେତେକଙ୍କ ମତରେ ଇଉକ୍ଲିଡ୍ ଖ୍ରୀ:ପୂ: ୨୭୫ ମସିହାରେ ଇହଧାମ ତ୍ୟାଗ କରିଥିଲେ । ସେତେବେଳକୁ ତାଙ୍କୁ ୫୫ ବର୍ଷ ବୟସ ହୋଇଥିଲା ।

## ନବମ ଅଧ୍ୟାୟ

# ମହା ବୈଜ୍ଞାନିକ ଆରକେମିଡିସ୍

ଇଉକ୍ଲିଡଙ୍କ ଶିଷ୍ୟ ମଧ୍ୟରେ କେହି ଯଦି ଖୁବ୍ ଖ୍ୟାତି ଅର୍ଜନ କରିଥାଆନ୍ତି, ତେବେ ସେ ହେଉଛନ୍ତି ଆରକେମିଡିସ୍, ଗ୍ରୀକ୍



ଆରକେମିଡ଼ିସ୍

ସାମ୍ରାଜ୍ୟର ଆଉ ଜଣେ ଅତି ବିଖ୍ୟାତ ବୈଜ୍ଞାନିକ । ଇଟାଲୀ ଦେଶର ଦକ୍ଷିଣରେ ସିସିଲି ନାମକ ଯେଉଁ ଦ୍ୱୀପ ଅଛି, ସେହି ଦ୍ୱୀପରେ ଥିବା

ସିରାକ୍ୟୁସ ନଗରରେ ଖ୍ରୀ:ପୂ: ୨୮୭ ମସିହାରେ ଆରକେମିଡିସ୍ ଜନ୍ମଗ୍ରହଣ କରିଥିଲେ । ସେତେବେଳେ ଦକ୍ଷିଣ ଇଟାଲୀ ଓ ସିସିଲି ଦ୍ୱୀପ ଗ୍ରୀକ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ଓ ସିରାକ୍ୟୁସ ନଗରଟି ଗ୍ରୀକ୍ ସାମ୍ରାଜ୍ୟ ଭିତରେ ଏକ ସମୃଦ୍ଧିଶାଳୀ ନଗର ଥିଲା । ତାଙ୍କ ପିତାଙ୍କ ନାମ ହେଉଛି ଫିଡିୟାସ୍ । ସେ ଜଣେ ପ୍ରସିଦ୍ଧ ଗାଣିତିକ ଜ୍ୟୋତିଷୀ ଥିଲେ । କେତେକଙ୍କ ମତରେ ଆରକେମିଡିସ୍ ସିସିଲିର ରାଜା ହାୟରୋଙ୍କ ନିକଟ ସମ୍ପର୍କୀୟ ଥିଲେ ।

ଆରକେମିଡିସ୍ ତାଙ୍କର ପ୍ରାଥମିକ ଶିକ୍ଷା ପାଇଥିଲେ ନିଜ ପିତାଙ୍କଠାରୁ । କିନ୍ତୁ ପରେ ମିଶରର ସୁପ୍ରସିଦ୍ଧ ଆଲେକ୍‌ଜାଣ୍ଡ୍ରିୟା ନଗରୀକୁ ଉଚ୍ଚଶିକ୍ଷା ପାଇଁ ପ୍ରେରିତ ହୋଇଥିଲେ । ସେତେବେଳେ ଆଲେକ୍‌ଜାଣ୍ଡ୍ରିୟାରେ ଅଧ୍ୟାପକତ୍ୱ କରୁଥାନ୍ତି ଇଉକ୍ଲିଡ୍ । ଆରକେମିଡିସ୍ ସିସିଲି ଦ୍ୱୀପରୁ ସମୁଦ୍ର ଭିତର ଜଳପଥ ଦେଇ ଆଲେକଜାଣ୍ଡ୍ରିୟାରେ ପହଞ୍ଚିଥିଲେ, ସେ ଯୁଗରେ ବ୍ୟବହୃତ ହେଉଥିବା ଛୋଟ ଛୋଟ ଡଙ୍ଗା ସାହାଯ୍ୟରେ । ଆଜିକାଲି ସମୁଦ୍ରରେ ଯିବା ଯେତେ ନିରାପଦ, ସେ ଯୁଗରେ ସେତେ ନ ଥିଲା । ବିପଦ ବରଣ କରି ଏତେ ଦୂର ପାଠ ପଢ଼ିବା ପାଇଁ ଯିବା ଆରକେମିଡିସ୍‌ଙ୍କ ଅନ୍ତର୍ନିହିତ ବିରାଟ ପ୍ରତିଭା ଓ ବ୍ୟକ୍ତିତ୍ୱର କମ୍ ପରିଚାୟକ ନୁହେଁ । ସେ ଆଲେକଜାଣ୍ଡ୍ରିୟାରେ ଇଉକ୍ଲିଡ୍‌ଙ୍କ ଶିଷ୍ୟତ୍ୱ ଗ୍ରହଣ କରି ଅଧ୍ୟୟନ କଲେ । ସେ ପଢ଼ିଲାବେଳେ ଜ୍ୟାମିତି ପ୍ରତି ଏତେ ଆକୃଷ୍ଟ ହୋଇପଡ଼ିଥିଲେ ଯେ ପଢ଼ା ସାରି ସିସିଲିକୁ ଫେରି ଆସିଲା ପରେ ମଧ୍ୟ ଆଲେକଜାଣ୍ଡ୍ରିୟାର ସେହି ଶିକ୍ଷାକେନ୍ଦ୍ର ସହିତ ସମ୍ପର୍କ ରଖିଥିଲେ । ତାଙ୍କର ବନ୍ଧୁମାନଙ୍କ ମଧ୍ୟରେ ଆଲେକଜାଣ୍ଡ୍ରିୟାର ବିଖ୍ୟାତ ପଣ୍ଡିତ ଏରାଟୋସ୍‌ଥେନିସ୍, କନନ୍‌ଡିସିଥିୟସ ଆଦି ପ୍ରଧାନ । ସେମାନଙ୍କ ସହିତ ତାଙ୍କର ରୀତିମତ ପତ୍ର ବିନିମୟ ଚାଲୁଥିଲା ।

ଆଲେକଜାଣ୍ଡ୍ରିୟାରେ ଆରକେମିଡିସ୍ ନିଜ ବିରାଟ ପ୍ରତିଭାର ପରିଚୟ ଦେଇଥିଲେ । ଫଳରେ ସେଠାରେ ଛାତ୍ରାବସ୍ଥାରେ ଥାଇ ମଧ୍ୟ ସେ ପ୍ରସିଦ୍ଧି ଅର୍ଜନ କରିଥିଲେ । ଆଲେକଜାଣ୍ଡ୍ରିୟାରେ ଶିକ୍ଷା ସମାପ୍ତ କରି ସେ ନିଜ ଜନ୍ମସ୍ଥାନ ସିସିଲିକୁ ଫେରି ଆସିଥିଲେ ଓ ସେଠାରେ ତାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ରହିଥିଲେ । ଆରକେମିଡିସ୍ ସିସିଲିର ରାଜଧାନୀ ସିରାକ୍ୟୁସ୍‌ରେ ନିଜ ଗବେଷଣାଗାର ଗଢ଼ି ସେହିଠାରେ ମୃତ୍ୟୁ ପର୍ଯ୍ୟନ୍ତ ଗବେଷଣାରେ ରତ ଥିଲେ ।

ଗଣିତ ଓ ପଦାର୍ଥବିଜ୍ଞାନ ଦୃଷ୍ଟିରୁ ଆରକେମିଡିସ୍‌ଙ୍କ ପ୍ରାଧାନ୍ୟ ଏରିଷ୍ଟଟଲଙ୍କଠାରୁ ଯଥେଷ୍ଟ ବେଶି ବୋଲି ବିଶେଷଜ୍ଞମାନେ ମତ ଦିଅନ୍ତି । ଆରକେମିଡିସ୍ ଏତେ ପୁରାତନ ଯୁଗରେ ଜନ୍ମଗ୍ରହଣ କରି ଆଧୁନିକ ଯୁଗର ବୈଜ୍ଞାନିକମାନଙ୍କ ଭଳି ଯେଉଁସବୁ ଆବିଷ୍କାର ଓ ଉଦ୍ଭାବନ କରି ଯାଇଛନ୍ତି, ତାହା ବାସ୍ତବିକ ପ୍ରଣିଧାନଯୋଗ୍ୟ । ସେଗୁଡ଼ିକ ଆଜିପର୍ଯ୍ୟନ୍ତ ମଧ୍ୟ ବ୍ୟବହୃତ ହେଉଅଛି ଓ ଲୋକପ୍ରିୟତା ହରାଇନି । ସେହିସବୁ ଉଦ୍ଭାବନ ଭିତରୁ ଅଧିକାଂଶ ଉପରେ ନିର୍ଭର କରି ଆଧୁନିକ ଯୁଗର ବହୁ ନୂତନ ଯୁଗାନ୍ତକାରୀ ଉଦ୍ଭାବନ ଦେଖାଦେଇଛି । ବିଶେଷତଃ ଗଣିତ ଓ ଯନ୍ତ୍ରବିଦ୍ୟାରେ ଆରକେମିଡିସ୍‌ଙ୍କ ଦାନ ଅତୁଳନୀୟ । ଅତୀତ ଯୁଗର ବୈଜ୍ଞାନିକମାନଙ୍କ ମଧ୍ୟରେ କେହି ଯଦି ପ୍ରକୃତ ବୈଜ୍ଞାନିକ ପ୍ରତିଭା ଓ ଦିବ୍ୟଦୃଷ୍ଟି ନେଇ ଜନ୍ମଗ୍ରହଣ କରିଥାନ୍ତି, ତେବେ ସେ ହେଉଛନ୍ତି ଏହି ଆରକେମିଡିସ୍ । ସେ ତାତ୍ତ୍ୱିକ ତଥା ପ୍ରାୟୋଗିକ ବିଜ୍ଞାନରେ ଖୁବ୍ ଦକ୍ଷତା ହାସଲ କରିଥିଲେ ଓ ଉଭୟ ବିଭାଗରେ ତାଙ୍କ ଆବିଷ୍କାର ଓ ଉଦ୍ଭାବନ ଅତି ଉଚ୍ଚକୋଟୀର ହୋଇଥିଲା ।

ସିରାକ୍ୟୁସ୍‌ର ରାଜା ହାୟରୋ ଓ ତାଙ୍କ ପୁତ୍ର ଗେଲୋଙ୍କ ସହିତ ଆରକେମିଡିସ୍‌ଙ୍କର ଖୁବ୍ ସଦ୍ଭାବ ଥିଲା । ପ୍ଲୁଟାର୍ଚ୍ଚ କହନ୍ତି

ଆରକେମିଡିସ୍ ପ୍ରଥମେ ପ୍ରଥମେ ତାଙ୍କ ଜ୍ୟାମିତି ଓ ଅନ୍ୟାନ୍ୟ ଗଣିତ ବିଷୟ ନେଇ ସର୍ବଦା ବ୍ୟସ୍ତ ରହୁଥିଲେ ଓ ତାଙ୍କର ଚିନ୍ତା କେବଳ ସେଇଥିରେ ହିଁ ପର୍ଯ୍ୟବସିତ ଥିଲା । ଦିନେ ରାଜା ହାୟରୋ ଆରକେମିଡିସ୍ଙ୍କୁ ଏହିଭଳି ତାତ୍ତ୍ୱିକ ଧରଣର ଗବେଷଣା ସଙ୍ଗେ ସଙ୍ଗେ ବ୍ୟବହାରୋପଯୋଗୀ ଲୋକମାନଙ୍କ କାମରେ ଲାଗିଲା ଭଳି ବିଷୟରେ ଗବେଷଣା କରିବାକୁ କହିଲେ । ରାଜାଙ୍କ କଥାଟି ଆରକେମିଡିସ୍ଙ୍କ ମନକୁ ପାଇଲା । ସେ ସେହିଦିନଠାରୁ ନିଜ ଗବେଷଣାର ଦିଗ ବଦଳାଇଲେ ଓ ଲୋକଙ୍କ ଉପକାରରେ ଆସିପାରିଲା ଭଳି ବହୁ ନୂଆ ନୂଆ ଉଦ୍ଭାବନ କଲେ ।

ସେ ଯୁଗରେ ଆରକେମିଡିସ୍ କେତେ କ'ଣ ଯେ ଆବିଷ୍କାର କରି ଯାଇଥିଲେ, ତହିଁର ବିଶଦ ତାଲିକା ଦେବା କଷ୍ଟକର । ବିଭିନ୍ନ ଯନ୍ତ୍ରପାତିରେ ବ୍ୟବହୃତ ହେବାପାଇଁ ସେ ପ୍ରଥମେ 'ପୁଲି'ର ଉଦ୍ଭାବନ କରିଥିଲେ । ଆଜିକାଲି ଏହି ଯନ୍ତ୍ର ପିଲାଙ୍କ ଖେଳନାଠାରୁ ଆରମ୍ଭ କରି ମଟରଗାଡ଼ି, ରେଳଗାଡ଼ି, ଉଡ଼ାଜାହାଜ ଆଦିରେ ବ୍ୟବହୃତ ହେଉଛି । ତାଙ୍କର ଅନ୍ୟତମ ଉଦ୍ଭାବନ ହେଉଛି ଜଳ ଓ ଚାପମାନ ଯନ୍ତ୍ର ।

ଗୋଟିଏ ଭାରୀ ପଦାର୍ଥକୁ ଉଠାଇବା ପାଇଁ ଆରକେମିଡିସ୍ଙ୍କ ଉଦ୍ଭାବିତ ଭାରଦଣ୍ଡ ବା ଲିଭର ଏକ ଯୁଗାନ୍ତକାରୀ ଉଦ୍ଭାବନ । ଏହି ଭାରଦଣ୍ଡ ସାହାଯ୍ୟରେ



ଭାରଦଣ୍ଡ ସାହାଯ୍ୟରେ ପୃଥିବୀକୁ ଟେକିବା ପରିକଳ୍ପନା

ବହୁ ଅସାଧ କାର୍ଯ୍ୟ କରି ହୁଏ । ଯେଉଁ ପଥରକୁ ଗୋଟିଏ ବଳବାନ୍ ମଣିଷ ଘୁଞ୍ଚାଇ ପାରେ ନାହିଁ, ସେହି ପଥରକୁ ଏକ ଭାରଦଣ୍ଡ ସାହାଯ୍ୟରେ ଏକ ପିଲା ଘୁଞ୍ଚାଇ ଦେଇପାରିବ । ଭାରଦଣ୍ଡର ଏତାଦୃଶ ଶକ୍ତିଶାଳିତାକୁ ଦର୍ଶାଇବା ପାଇଁ ତାଙ୍କର ଏକ ଉକ୍ତି ସାରା ପୃଥିବୀରେ ପ୍ରସିଦ୍ଧି ଅର୍ଜନ କରିଛି । ସେହି ଉକ୍ତିଟି ହେଉଛି 'ମୋତେ ଠିଆହେବା ପାଇଁ ସ୍ଥାନଟିଏ ଦିଅ, ମୁଁ ଭାରଦଣ୍ଡ ସାହାଯ୍ୟରେ ଏହି ପୃଥିବୀକୁ ଉଠାଇଦେବି' । ପ୍ରକୃତରେ ପୃଥିବୀକୁ ଉଠାଇବା ବା ନ ଉଠାଇବା ବଡ଼ କଥା ନୁହେଁ, ଭାରଦଣ୍ଡର ଶକ୍ତି ଏହି ଉକ୍ତି ଦ୍ୱାରା ସ୍ପଷ୍ଟ ପ୍ରତିପାଦିତ ହୁଏ ।

ତାଙ୍କର ଏହି ଭାରଦଣ୍ଡ ସହିତ କପିକଳର ସଂଯୋଗ ଆଉ ଏକ ଯୁଗାନ୍ତକାରୀ ଉଦ୍ଭାବନ । ନିଜ ଉଦ୍ଭାବିତ ଭାରଦଣ୍ଡ ଓ କପିକଳର ଶକ୍ତି ଦେଖାଇବାପାଇଁ ସେ ଗୋଟିଏ ଯୁଗାନ୍ତକାରୀ ପରୀକ୍ଷା କରିଥିଲେ । ସିରାକ୍ୟୁସ ବନ୍ଦରରେ ଗୋଟିଏ ଜାହାଜ ପହଞ୍ଚିଥାଏ । ଦିନେ ଦେଖାଗଲା, ସେହି ଜାହାଜ ସହିତ ଏକ ବିରାଟ ଦୌଡ଼ି ବନ୍ଧାଯାଇଛି । ସେହି ଦୌଡ଼ିର ଅପରପ୍ରାନ୍ତ କେତେଗୋଟି ପୁଲି ବା କପିକଳ ଦେଇ ଘୂରି ଆସି ଜାହାଜର ବିପରୀତ ଦିଗରେ ଲାଗିଛି । ସେହି ଦଉଡ଼ି ସହ ଜାହାଜ ଉପର ଦେଇ ଏକ ବିରାଟ ଦଣ୍ଡ ଲାଗିଛି ଓ ଅପର ମୁଣ୍ଡରେ ଥିବା ଦଉଡ଼ି ବନ୍ଦରରେ ଲାଗିଛି । ବିରାଟ ଜନତା ସେହି ବନ୍ଦରରେ ରୁଣ୍ଡ ହୋଇଥାଆନ୍ତି ଏହି ଅଦ୍ଭୁତ ପରୀକ୍ଷା ଦେଖିବା ପାଇଁ । ରାଜା ହାୟରୋ ଏହି ପରୀକ୍ଷାରେ ପ୍ରଧାନ ଅତିଥି । ରାଜା ବନ୍ଦରରେ ପହଞ୍ଚିଲାକ୍ଷଣି ଆରକେମିଡିସ୍ ତାଙ୍କୁ ପାଛୋଟି ନେଲେ ସେହି ଦଉଡ଼ି ପର୍ଯ୍ୟନ୍ତ । ରାଜାଙ୍କୁ ବନ୍ଧାହୋଇ ଥିବା ଦଉଡ଼ିକୁ ଟାଣିବାକୁ ଆରକେମିଡିସ୍ କହିଲେ । ରାଜା ଅନୁରୋଧ ରକ୍ଷା କରି ଦଉଡ଼ିକୁ ଟାଣିଲେ । ଉପସ୍ଥିତ ଜନତା ଅନାଇ ରହିଥାନ୍ତି ଅତ୍ୟଧିକ ବିସ୍ମୟରେ ।

କ'ଣ ହେବାକୁ ଯାଉଛି ଜାଣିପାରୁ ନ ଥାନ୍ତି । ରାଜା ଦଉଡ଼ିକୁ ଟାଣିଲେ ସତ, କିନ୍ତୁ କିଛି ହେଲାନି ।

ଆରକେମିଡିସ ପାଖରେ ଠିଆ ହୋଇଥିଲେ । ନିଜ ପରୀକ୍ଷାଟି ସମସ୍ତଙ୍କୁ ଦେଖାଇ ଆଶ୍ଚର୍ଯ୍ୟାନ୍ୱିତ କରିବା ତାଙ୍କର ଇଚ୍ଛା । କିନ୍ତୁ କ'ଣ କିଛି ହେବାକୁ ନାହିଁ । ସେ ରାଜାଙ୍କୁ ପୁଣି ଦଉଡ଼ିଟିକୁ ଆଉ ଟିକିଏ ଜୋରରେ ଟାଣିବାକୁ କହିଲେ । ରାଜା ଏଥର ଆଉ ଟିକିଏ ଜୋରରେ ଟାଣିଲେ । କି ଆଶ୍ଚର୍ଯ୍ୟ, ଦଉଡ଼ିର ଅପରମୁଣ୍ଡରେ ବନ୍ଧା ହୋଇଥିବା ଜାହାଜଟି ହଠାତ୍ ଜଳରୁ ଶୂନ୍ୟକୁ ଉଠିଗଲା । ରାଜା ଏହି ଉଦ୍ଭାବନରେ ଅତ୍ୟନ୍ତ ଖୁସିହୋଇ ଆରକେମିଡିସ୍‌ଙ୍କୁ କୁଣ୍ଢାଇ ପକାଇଥିଲେ । ବିଜ୍ଞାନର କି କରାମତି ସତେ ! ମଣିଷର ଶାରୀରିକ ଶକ୍ତିକୁ କେତେ ସହସ୍ରଗୁଣ ବଢ଼ାଇ ଦେଉଛି ? ରାଜା ହାୟରୋଙ୍କ ଆରକେମିଡିସଙ୍କ ପ୍ରତି ଯାହା ସମ୍ମାନ ଥିଲା ତାହା ଏଥର ବହୁଗୁଣ ବଢ଼ିଗଲା । ଆଜିକାଲି ଏହି ଭାରଦଣ୍ଡ ଓ ପୁଲିର ସହଯୋଗରେ ଆହୁରି କଠିନତର କାର୍ଯ୍ୟ କରି ହେଉଛି । ଆଜିକାଲି ବ୍ୟବହୃତ ଶହ ଶହ ଯନ୍ତ୍ରରେ ଏହି ଦୁଇଟିର କାର୍ଯ୍ୟ ଅତ୍ୟଧିକ ଭାବରେ ରହିଛି ।



ଆର୍କମେଡ଼ିସଙ୍କ ସ୍କ୍ରୁ

ନଦୀ କିମ୍ବା ପୋଖରୀର ଜଳକୁ ଉପରକୁ ଉଠିବା ପାଇଁ ଆରକେମିଡ଼ିସଙ୍କ ଉଦ୍ଭାବିତ 'କୋଚଲିଆ' ବା 'ଆରକେମିଡ଼ିସଙ୍କ ସ୍କ୍ରୁ' ଆଉ ଏକ ଯୁଗାନ୍ତକାରୀ ଉଦ୍ଭାବନ । ଏହି ଯନ୍ତ୍ରଟିକୁ ଅନାଇଲେ

ଆରକେମିଡିସଙ୍କ ବିରାଟ ବିଜ୍ଞାନ ପ୍ରତିଭା ଜଣାପଡ଼େ । ଏହି ଯନ୍ତ୍ରଟିକୁ ଘୂରାଇଲେ ଜଳ ତଳୁ ଉପରକୁ ସହଜରେ ଉଠିଯାଏ । ଏହି ଯନ୍ତ୍ରକୁ ବଙ୍କେଇ ରଖାଯାଇଥାଏ । ଏହାର ତଳମୁଣ୍ଡ ଜଳଭିତରେ ରଖାଯାଇଥାଏ ଓ ଉପର ମୁଣ୍ଡ ଉପର ସ୍ଥାନରେ ଥାଏ । ଏହି ଯନ୍ତ୍ରଟିକୁ ଘୂରାଇଲାକ୍ଷଣି ଜଳ ତଳୁ ସ୍କ୍ରୁ ଭିତର ଦେଇ ଉପରକୁ ଉଠିଆସେ । ସେ ଏହି ଯନ୍ତ୍ର ସାହାଯ୍ୟରେ ରାଜା ହାୟୋରୋଙ୍କ ତିଆରି ଏକ ଜାହାଜରୁ ଜଳ ନିଷ୍କାସନ କରିଦେଇପାରିଥିଲେ । ସେ ସମୟରେ ଚାଷ ଜମିରେ ଜଳ ମଡ଼ାଇବା ପାଇଁ ଏହା ଅତି ଉତ୍କୃଷ୍ଟ ଯନ୍ତ୍ର ଭାବରେ ବିବେଚିତ ହେଉଥିଲା । ଚାଷ ପାଇଁ ଆବଶ୍ୟକ ହେଉଥିବା ବୃଷ୍ଟି ଯଦି ଆଶାଜନକ ପରିମାଣରେ ନ ହୁଏ, ତେବେ ଏହି ଯନ୍ତ୍ର ସାହାଯ୍ୟରେ ନଦୀ, ପୋଖରୀରୁ ଜଳ ଉଠାଇ ଜମିରେ ମଡ଼ାଇ ଦେଶକୁ ଦୁର୍ଭିକ୍ଷରୁ ରକ୍ଷା କରି ହୁଏ ।

ଆରକେମିଡିସଙ୍କ ଆଉ ଏକ ଯୁଗାନ୍ତକାରୀ ଉଦ୍ଭାବନ ହେଉଛି ପ୍ଲବନ ତତ୍ତ୍ୱ । ଏହା ଆଜିପର୍ଯ୍ୟନ୍ତ ଚଳି ଆସୁଅଛି । ଏହା "ଆରକେମିଡିସଙ୍କ ପ୍ଲବନ ତତ୍ତ୍ୱ" ଭାବରେ ପରିଚିତ । ଏହି ତତ୍ତ୍ୱ ହେଉଛି, "ଗୋଟିଏ କଠିନ ପଦାର୍ଥକୁ ତରଳ ପଦାର୍ଥରେ ବୁଡ଼ାଇଲେ ଏହା ନିଜ ଆୟତନ ସହିତ ସମାନ ଆୟତନର ତରଳ ପଦାର୍ଥକୁ ଅପସାରଣ କରେ ଓ ଏହାର ଯେଉଁ ଓଜନ ତରଳ ପଦାର୍ଥ ଭିତରେ କମିଯାଏ, ତାହା ଏହି ଅପସୃତ ତରଳ ପଦାର୍ଥର ଓଜନ ସହିତ ସମାନ ।" ସେ ଏହି ସୂତ୍ରକୁ କିପରି ଆବିଷ୍କାର କଲେ ସେ ସମ୍ପର୍କରେ ଗୋଟିଏ ଗଳ୍ପ ଅଛି ।

ସିରାକ୍ୟୁସର ରାଜା ହାୟରୋ ତାଙ୍କର କୌଣସି ଏକ ଦେବୀଙ୍କୁ ଗୋଟିଏ ସୁନା ମୁକୁଟ ଦେବାପାଇଁ ମାନସିକ କରିଥିଲେ । ସେ ନିଜ

ରାଜ୍ୟର ଗୋଟିଏ ବଣିଆକୁ ଡାକି ତାକୁ ନିର୍ଦ୍ଦିଷ୍ଟ ଓଜନର ଖାଣ୍ଟି ସୁନା ଦେଲେ ସେହି ଓଜନରେ ଗୋଟିଏ ମୁକୁଟ ତିଆରି କରିବାପାଇଁ । କିଛିଦିନ ପରେ ବଣିଆଟି ମୁକୁଟ ତିଆରି କରିଆଣି ରାଜାଙ୍କୁ ଦେଲା । ରାଜା ଓଜନ କରି ଦେଖିଲେ ମୁକୁଟଟିର ଓଜନ ଠିକ୍ ହେଲା । ମୁକୁଟଟି ପରୀକ୍ଷା କଲାରୁ ଏହା ତାଙ୍କ ପ୍ରଦତ୍ତ ଖାଣ୍ଟି ସୁନାରେ ତିଆରି ହେଲାଭଳି ଜଣାପଡ଼ିଲାନି । ରାଜାଙ୍କୁ ଜଣାପଡ଼ିଲା, ଅସାଧୁ ବଣିଆ ଏଥି ସହିତ କିଛି ରୁପା ମିଶାଇଦେଇ କିୟତ୍ ପରିମାଣରେ ଖାଣ୍ଟି ସୁନାକୁ ଆତ୍ମସାତ୍ କରିଛି । ମୁକୁଟଟିକୁ ନ ଭାଙ୍ଗି ସେ ଏହା କେମିତି ଜାଣିପାରିବେ, ତାଙ୍କର ହେଲା ପ୍ରଧାନ ଚିନ୍ତା । ସେଥିପାଇଁ ସେ ଦିନେ ଡାକିଲେ ଆରକେମିଡିସଙ୍କୁ ଏହି ପ୍ରଶ୍ନର ସମାଧାନ କରିବାପାଇଁ ।

ରାଜାଙ୍କ ଅନୁରୋଧ ରକ୍ଷା କରି ଆରକେମିଡିସ ପ୍ରଶ୍ନର ସମାଧାନ ପାଇଁ ଲାଗିପଡ଼ିଲେ । ଆରକେମିଡିସ ଅନେକ ସମୟରେ ନାନା କଥା ଭାବୁ ଭାବୁ ଅନ୍ୟମନସ୍କ ଥାଆନ୍ତି । ସେ ବେଳେବେଳେ ବିଭିନ୍ନ ସମସ୍ୟାର ସମାଧାନ ପାଇଁ ଚିନ୍ତାରେ ଏତେ ମଜ୍ଜିଯାଆନ୍ତି ଯେ ତାଙ୍କ ଚାରିପାଖରେ କ'ଣ ଘଟୁଛି ସେ ଜାଣିପାରନ୍ତି ନାହିଁ । ସେ ଦିନେ ଏହି ମୁକୁଟ ଚିନ୍ତାରେ ଏତେ ମଜ୍ଜି ଯାଇଥିଲେ ଯେ ଗାଧୋଇବାପାଇଁ ଗାଧୁଆ କୁଣ୍ଡଠାକୁ ଯାଇ ଗାଧୁଆ କୁଣ୍ଡରେ ପାଣି ଅଛି କି ନାହିଁ ନ ଦେଖି ହଠାତ୍ ତା' ଭିତରକୁ ଡେଇଁ ପଡ଼ିଲେ । ଗାଧୁଆ କୁଣ୍ଡଟି ସେତେବେଳେ ଜଳରେ ପୂର୍ଣ୍ଣ ଥିଲା । ସେ କୁଣ୍ଡରେ ପଶିବାକ୍ଷଣି ସେଥିରୁ କିଛି ଜଳ ଉଛୁଳି ପଡ଼ିଲା । ଏହା ଦେଖି ହଠାତ୍ ତାଙ୍କ ମୁଣ୍ଡକୁ ରାଜାଙ୍କ ଦେଇଥିବା ପ୍ରଶ୍ନର ସମାଧାନ ବିଜୁଳି ପରି ଚାଲିଆସିଲା । ସେ ଆନନ୍ଦରେ କୁଣ୍ଡରୁ ବାହାରିପଡ଼ି ପୂରାପୂରି ଲଂଗଳା ଓ ଓଦାହୋଇ 'ଇଉରେକ୍‌କା, ଇଉରେକ୍‌କା', ଯାର ଅର୍ଥ ହେଉଛି 'ମୁଁ ପାଇଛି' 'ମୁଁ ପାଇଛି' ପାଟି

କରି ସିରାକ୍ୟୁସ ରାସ୍ତାରେ ଦୌଡ଼ିଲେ ରାଜାଙ୍କ ପାଖକୁ, ରାଜାଙ୍କ ପ୍ରଶ୍ନର ଉତ୍ତର ବତାଇଦେବା ପାଇଁ ।

ଏହି ଘଟଣାଟି ଆରକେମିଡିସଙ୍କୁ ବତାଇ ଦେଇପାରିଲା ମୁକୁଟ ସମସ୍ୟାଟିର କେମିତି ସମାଧାନ କରିହେବ । ସେଥିପାଇଁ ସେ ମୁକୁଟର ଓଜନ ଅନୁଯାୟୀ ଦୁଇଟି ପେଣ୍ଡୁ ତିଆରି କଲେ, ଗୋଟିଏ ଖାଣ୍ଟି ସୁନାରୁ ଓ ଅନ୍ୟଟି ଖାଣ୍ଟି ରୁପାରୁ । ସେ ଦେଖିଲେ ପେଣ୍ଡୁ ଦୁଇଟିର ଆକାର ଅଲଗା ଅଲଗା । ସୁନା ପେଣ୍ଡୁଟି ରୁପା ପେଣ୍ଡୁଠାରୁ ଆକାରରେ ଛୋଟ । କାରଣ ସୁନା ରୁପାଠାରୁ ଅଧିକ ଭାରୀ ।

ଏଥର ସେ ଏକ ବଡ଼ ପାତ୍ରରେ ଜଳ ନେଲେ । ପାତ୍ରରେ ଜଳର ଉଚ୍ଚତା କେଉଁଠି ଅଛି ଲକ୍ଷ୍ୟ କଲେ । ତତ୍‌ପରେ ସେହି ପାତ୍ରରେ ପ୍ରଥମେ ସୁନା ପେଣ୍ଡୁଟିକୁ ବୁଡ଼ାଇଲେ । ପାତ୍ରରେ ଜଳର ଉଚ୍ଚତା କେତେ ଉପରକୁ ଉଠିଲା ଲକ୍ଷ୍ୟକଲେ । ପରେ ସୁନା ପେଣ୍ଡୁଟି କାଢ଼ି ରୁପା ପେଣ୍ଡୁଟି ବୁଡ଼ାଇଲେ ଓ ଜଳର ଉଚ୍ଚତା ଲକ୍ଷ୍ୟ କଲେ । ସେ ଦେଖିଲେ, ରୁପା ପେଣ୍ଡୁଟି ବୁଡ଼ାଇଲା ବେଳକୁ ଜଳ ବେଶୀ ଉପରକୁ ଉଠୁଛି ।



ଆରକେମିଡ଼ିସଙ୍କ ମୁକୁଟଦ୍ୱାରା ଜଳ ଅପସାରଣ ପରୀକ୍ଷା

ସେ ଏହା ପରେ ସେହି ଜଳରେ ମୁକୁଟଟିକୁ ବୁଡ଼ାଇଲେ । ସେ ଲକ୍ଷ୍ୟକଲେ ମୁକୁଟ ବୁଡ଼ାଇଲାବେଳକୁ ଜଳ ପ୍ରଥମ ଉଚ୍ଚତା ଠାରୁ ଅଧିକ ଓ ଦ୍ୱିତୀୟ ଉଚ୍ଚତାଠାରୁ କମ୍ ଉଠୁଛି । ସେ ଏହିଥିରୁ ସମସ୍ତଙ୍କ ଆଗରେ ପ୍ରମାଣ କରିଦେଲେ ଯେ ସେହି ମୁକୁଟଟିରେ ରୁପା ମିଶିଛି ।

ଏହା ପରେ ଆରକେମିଡିସ ଲାଗିପଡ଼ିଲେ ମୁକୁଟଟିରେ କେତେ ପରିମାଣରେ ରୁପା ମିଶିଛି ବାହାର କରିବା ପାଇଁ । ସେଥିପାଇଁ ସେ ବିଭିନ୍ନ ଅନୁପାତରେ ରୁପା ମିଶାଇ ମୁକୁଟ ଓଜନର ପେଣ୍ଡୁ ତିଆରି କଲେ । ସେହି ପେଣ୍ଡୁକୁ ଗୋଟିକ ପରେ ଗୋଟିଏ ପାଣିରେ ବୁଡ଼ାଇ ଦେଖିଲେ ମୁକୁଟ ବୁଡ଼ାହେଲାବେଳେ ଜଳ ଯେତିକି ଉଚ୍ଚତାକୁ ଉଠିଥିଲା, କେଉଁ ପେଣ୍ଡୁଟି ଠିକ୍ ସେତିକି ଉଚ୍ଚତାକୁ ଜଳକୁ ଉଠାଇ ପାରୁଛି । ଯେଉଁ ପେଣ୍ଡୁଟି ସେତିକି ଉଚ୍ଚତାକୁ ଜଳକୁ ଉଠାଇପାରିଛି, ସେହି ପେଣ୍ଡୁରେ ସୁନା ଓ ରୁପାର ଅନୁପାତ ଯାହା, ମୁକୁଟଟିରେ ସୁନା ଓ ରୁପାର ଅନୁପାତ ଠିକ୍ ସେଇଆ । ଏହି ଉପାୟ ଅବଲମ୍ବନ କରି ଆରକେମିଡିସ ମୁକୁଟଟିକୁ ନ ଭାଙ୍ଗି ସେଥିରେ ମିଶିଥିବା ରୁପାର ପରିମାଣ ବାହାର କରିପାରିଲେ । ଏହି ପରୀକ୍ଷା ପରେ ବଣିଆଟି ସୁନା ଚୋରି କରିଥିବା କଥା ମାନିଗଲା । ରାଜା ତା'ର ଅସାଧୁତା ପାଇଁ ତାକୁ ମୃତ୍ୟୁଦଣ୍ଡ ଦେଲେ ।

ଜ୍ୟାମିତିରେ ଆରକେମିଡିସଙ୍କ ଦାନ ମଧ୍ୟ ଯଥେଷ୍ଟ । ଏକ ବୃତ୍ତର କ୍ଷେତ୍ରଫଳ ମାପିବାରେ ତାଙ୍କ ଦାନ ଅସୀମ । ଘନ ବୃତ୍ତ ଓ ସ୍ତମ୍ଭକର ଆୟତନ ଓ ପୃଷ୍ଠ କ୍ଷେତ୍ରଫଳ ମାପିବାରେ ସେ ସର୍ବପ୍ରଥମ । ଗୋଟିଏ ଘନବୃତ୍ତ ଓ ଘନବୃତ୍ତର ବିଭିନ୍ନ ପାର୍ଶ୍ୱକୁ ଲାଗିଥିବା ଏକ ସ୍ତମ୍ଭକର ଆୟତନ ଭିତରେ ଅନୁପାତ ହେଉଛି ୨ : ୩ । ଆରକେମିଡିସ ଭାବୁଥିଲେ ଏହି ଅନୁପାତ ଆବିଷ୍କାର କରିବାହିଁ ହେଉଛି ତାଙ୍କର

ସବୁଠାରୁ ବଡ଼ ଆବିଷ୍କାର । ସେଥିପାଇଁ ତାଙ୍କ ସମାଧି ଉପରେ ଏକ ଘନବୃତ୍ତ ମଝିରେ ଥିବା ଏକ ସ୍ତମ୍ଭାକାର ଚିତ୍ର ରଖିବା ପାଇଁ ସେ ଲେଖି ଯାଇଥିଲେ ।

ଜ୍ୱଳନ କାଚ ହେଉଛି ଆରକେମିଡିସଙ୍କର ଆଉ ଏକ ଉଦ୍ଭାବନ । ଏହି କାଚ ଏପରି ଯେ ଏହାକୁ ସୂର୍ଯ୍ୟକିରଣରେ ଦେଖାଇ ଏହା ତଳେ କାଠ, କୁଟା, ଲୁଗା, ତୂଳା ଆଦି ରଖିଲେ ସେଗୁଡ଼ିକ ଜଳିଉଠେ । କଥିତ ଅଛି, ଥରେ ରୋମାନ୍‌ମାନେ ଖ୍ରୀ:ପୂ: ୨୧୬ ମସିହାରେ ସିସିଲି ଦ୍ୱୀପକୁ ଆକ୍ରମଣ କରି ସିରାକ୍ୟୁସକୁ ଘେରାଉ କଲେ । ସହରକୁ ଶତ୍ରୁମାନଙ୍କ କବଳରୁ ରକ୍ଷା କରିବାପାଇଁ ଆରକେମିଡିସ ବଡ଼ ବଡ଼ ଜ୍ୱଳନ କାଚ ସାହାଯ୍ୟରେ ସେମାନଙ୍କ ଯୁଦ୍ଧ ଜାହାଜକୁ ପୋଡ଼ି ପକାଇଲେ । ଏତଦ୍ ବ୍ୟତୀତ ଶତ୍ରୁଙ୍କୁ ନିପାତ କରିବାପାଇଁ ସେ ଆହୁରି କେତେପ୍ରକାର ଯନ୍ତ୍ର ଉଦ୍ଭାବନ କରିଥିଲେ । ସେଥିରୁ ଗୋଟିଏ ହେଉଛି ଭାରଦଣ୍ଡକୁ ବ୍ୟବହାର କରି ବଡ଼ ବଡ଼ ପଥରଖଣ୍ଡକୁ ସମୁଦ୍ର ତୀରରୁ ଯୁଦ୍ଧଜାହାଜ ଉପରକୁ ନିକ୍ଷେପ କରିବା । ସେ ଉପକୂଳର ପ୍ରାଚୀର ପଛରେ ନାନାପ୍ରକାର ଭାରଦଣ୍ଡ ଥିବା ଯନ୍ତ୍ର ରଖି ସେହି ଯନ୍ତ୍ରରୁ ବଡ଼ ବଡ଼ ପଥରଖଣ୍ଡମାନ ରୋମାନ ଜାହାଜ ଉପରକୁ ନିକ୍ଷେପ କରୁଥିଲେ । ଫଳରେ ଜାହାଜ ସବୁ ଖଣ୍ଡ ବିଖଣ୍ଡ ହୋଇ ଜଳରେ ବୁଡ଼ି ଯାଉଥିଲା । ଏହି ପଥରଖଣ୍ଡ କେଉଁଆଡୁ ଆସୁଛି ରୋମାନମାନେ ଜାଣିପାରୁ ନ ଥିଲେ । ଏତଦ୍‌ବ୍ୟତୀତ ଭାରଦଣ୍ଡ ସାହାଯ୍ୟରେ ଅତି ଗୋପନୀୟ ଭାବରେ ଗୋଟିଏ ଗୋଟିଏ ଯୁଦ୍ଧଜାହାଜକୁ ଶୂନ୍ୟକୁ ଟେକିଆଣି ଅନ୍ୟ ଯୁଦ୍ଧଜାହାଜ ସହିତ ପିଟି ଦେଉଥିଲେ । ଏହା ଫଳରେ ଜାହାଜସବୁ ଭାଙ୍ଗି ଚୂରମାର ହୋଇଯାଉଥିଲା । ସିରାକ୍ୟୁସର ସୈନ୍ୟବାହିନୀ ଖୁବ୍ ଛୋଟ । ରୋମାନମାନଙ୍କ ସୈନ୍ୟବାହିନୀ ଖୁବ୍ ବିରାଟ, ତଥାପି ଆରକେମିଡିସଙ୍କ ବୁଦ୍ଧିବଳରେ ସିରାକ୍ୟୁସର ଛୋଟ

ସୈନ୍ୟବାହିନୀ ପ୍ରାୟ ତିନିବର୍ଷ ଧରି ରୋମାନ୍‌ବାହିନୀକୁ ଅଟକାଇ ରଖିପାରିଲେ । ସହରର ଭିତରକୁ ପଶିବାକୁ ଦେଲେନି । ରୋମାନ୍ ସେନାପତି ମାର୍ସେଲେସଙ୍କୁ ସିରାକ୍ୟୁସକୁ ଦଖଲ କରିବା କାଠିକର ପାଠ ଭଳି ଜଣାପଡ଼ିଥିଲା । ସେ ସିସିଲି ଆକ୍ରମଣ କରିବା ପୂର୍ବରୁ ଆରକେମିଡିସଙ୍କ ପ୍ରସିଦ୍ଧି ଶୁଣିଥିଲେ । ଏଥିରୁ ସ୍ୱୟଂ ଆଖିରେ ଦେଖିଲେ ଜଣେ ମଣିଷର ବୈଜ୍ଞାନିକ ବୁଦ୍ଧି ତାଙ୍କର ଏତେବଡ଼ ସେନାବାହିନୀକୁ କିଭଳି କାବୁକରି ରଖିଦେଇଛି ।

ମାର୍ସେଲେସ ନଛୋଡ଼ବନ୍ଦା ଲୋକ, ସେ ସିରାକ୍ୟୁସକୁ ଛାଡ଼ିଲେ ନାହିଁ, ଅବରୋଧ କରି ରଖିଲେ । ତିନିବର୍ଷ ପରେ ସିରାକ୍ୟୁସର ଖାଦ୍ୟଭଣ୍ଡାର ଶେଷ ହୋଇଆସିଲା । ରୋମାନମାନେ ଚାରିଆଡ଼ ଘେରାଉ କରି ରଖିଥିବାରୁ ବାହାରୁ ଖାଦ୍ୟପଦାର୍ଥ ସହର ଭିତରକୁ ଆସିପାରିଲାନି । ପରିଶେଷରେ ସିରାକ୍ୟୁସବାହିନୀ ହାର ମାନିଲେ । ଆରକେମିଡିସ ଯେତେବେଳେ ଦେଖିଲେ ଖାଦ୍ୟାଭାବରୁ ସୈନ୍ୟବାହିନୀ ଭାଙ୍ଗିପଡ଼ିଲାଣି, ସେ ଯୁଦ୍ଧକ୍ଷେତ୍ର ଛାଡ଼ି ନିଜ ଗବେଷଣାଗାରକୁ ଫେରିଆସିଲେ । ରୋମାନମାନେ ସିରାକ୍ୟୁସରେ ପଶି ଲୁଣ୍ଠନ, ହତ୍ୟା ଆଦି ଆରମ୍ଭ କରିଦେଲେ । ସେନାପତି ମାର୍ସେଲସ ଆଦେଶ ଦେଲେ ଯେ ଏହି ଲୁଣ୍ଠନ ଓ ହତ୍ୟା ବେଳେ କେହି ଯେମିତି ଆରକେମିଡିସଙ୍କର କିଛି କ୍ଷତି ନ କରନ୍ତି । ସେମାନେ ଯଦି ତାଙ୍କୁ କେଉଁଠି ପାଆନ୍ତି, ତେବେ ସମ୍ମାନର ସହ ତାଙ୍କଠାକୁ ଘେନି ଆସିବାପାଇଁ ତାଙ୍କର କଡ଼ା ଆଦେଶ ଥିଲା ।

ଖ୍ରୀ.ପୂ. ୨୧୨ ମସିହାରେ ସିରାକ୍ୟୁସର ପତନ ପରେ ଆରକେମିଡିସ ନିଜ ଗବେଷଣାରେ ପୁଣି ମନ ଦେଲେ । ଦିନେ ସେ ତାଙ୍କ ଗବେଷଣାଗାର ବାହାରେ ବାଲିଉପରେ ବସି ଚିତ୍ର କାଟି ଏକ ଜ୍ୟାମିତିକ ବିଷୟ ଭାବିବାରେ ବ୍ୟସ୍ତ ଥିଲେ । ଠିକ୍ ସେତିକିବେଳେ ଜଣୈକ ରୋମାନ ସୈନ୍ୟ ତାଙ୍କଠାକୁ ଦୌଡ଼ି ଆସି ଆରକେମିଡିସ

କେଉଁଠି ଅଛନ୍ତି ପଚାରିଲେ । ଆରକେମିଡିସ ତାଙ୍କ ଜ୍ୟାମିତି ଚିନ୍ତାରେ ଏତେ ବୁଡ଼ିଯାଇଥିଲେ ଯେ ସେ ଅନ୍ୟମନସ୍କ ଭାବରେ ଉତ୍ତର ଦେଲେ ଯେ ଆରକେମିଡିସ ସେଠାରୁ ଚାଲିଗଲେଣି । ସେଥି ସଙ୍ଗେ ସଙ୍ଗେ ବାଲି ଉପରେ ଟଣାଯାଇଥିବା ଗାରକୁ ନ ମାଡ଼ି ନଷ୍ଟ ନ କରିବାକୁ ସେ ରୋମାନ ସୈନ୍ୟଟିକୁ ତାଗିଦ କରିଦେଲେ । ସୈନ୍ୟଟି ଏଥିରେ ଅତ୍ୟନ୍ତ ରୁଷ୍ଟ ହୋଇ ତାଙ୍କୁ ଜଣେ ସାଧାରଣ ସିସିଲିବାସୀ ବୋଲି ଭାବି ହତ୍ୟା କରି ପକାଇଲା ।

ଆରକେମିଡିସ୍‌ଙ୍କ ଏଭଳି ଅକାଳ ମୃତ୍ୟୁର ଅତ୍ୟଧିକ ବ୍ୟଥିତ ହେଲେ ରୋମାନ ସେନାପତି ମାର୍ସେଲେସ । ସେ ତାଙ୍କ ମୃତ ଶରୀରକୁ ନେଇ ଯଥାରୀତି ସମ୍ମାନର ସହିତ କବର ଦେଇ ସେହି କବର ଉପରେ ଏକ ସ୍ମୃତିସୌଧ ତୋଳାଇ ଦେଲେ । ସେହି ସମାଧି ମନ୍ଦିରରେ ସେ ଗୋଟିଏ ସ୍ତମ୍ଭକ ଭିତରେ ଗୋଲକ ଥିବା ଚିତ୍ର ଆଙ୍କିଦେଲେ । ଏହା ତଳେ କେତେଗୋଟି ଧାଡ଼ିରେ ଲେଖାହୋଇଥିଲା ଯେ ଆରକେମିଡିସ ଏହି ଉଭୟର ପାରସ୍ପରିକ ଅନୁପାତ ମାପିବାକୁ ନିଜର ସବୁଠାରୁ ବଡ଼ ଆବିଷ୍କାର ବୋଲି ମଣୁଥିଲେ । ଏହି ସମାଧି ମନ୍ଦିରଟି ଲୋକଲୋଚନ ଗୋଚରକୁ ଆସିଲା ପ୍ରାୟ ଶହେ ବର୍ଷ ପରେ, ରୋମ୍‌ର ସୁବିଖ୍ୟାତ ବକ୍ତା ସିସେରୋଙ୍କ ପ୍ରଚେଷ୍ଟାରେ ।

ଆରକେମିଡିସଙ୍କ ଏହି ମୃତ୍ୟୁ କାହାଣୀ ଶୁଣିଲେ ଜଣାପଡ଼େ ଯେ ଆରକେମିଡିସ ମୃତ୍ୟୁ ପର୍ଯ୍ୟନ୍ତ ଜଣେ ସଚ୍ଚା ବୈଜ୍ଞାନିକ ଥିଲେ । ଉପରେ ଯେଉଁସବୁ ଆବିଷ୍କାର ଓ ଉଦ୍ଭାବନ କଥା କୁହାଗଲା, ସେସବୁ ବ୍ୟତୀତ ତାଙ୍କର ଆହୁରି ବହୁ ଆବିଷ୍କାର ଓ ଉଦ୍ଭାବନ ରହିଛି । ସେଗୁଡ଼ିକ ଆଜିକାଲି ସାଧାରଣ ବିଜ୍ଞାନ ସହିତ ଏମିତି ମିଶି କରି ରହିଛି ଯେ ସୂଚାଇ ନ ଦେଲେ ତାଙ୍କ ଆବିଷ୍କାରକୁ ସାଧାରଣଙ୍କ ପକ୍ଷରେ ଧାରଣା କରିବା କଷ୍ଟକର ହେବ ।

## ଦଶମ ଅଧ୍ୟାୟ

# ମହର୍ଷି ଆତ୍ରେୟ

ପୁରାତନ ଭାରତର ବିଖ୍ୟାତ ଜ୍ୟୋତିର୍ବିଦ୍ ଅତ୍ରିଙ୍କ ପୁଅ ହେଉଛନ୍ତି ଆତ୍ରେୟ । ଆତ୍ରେୟଙ୍କ ଜନ୍ମକାଳ ସମ୍ବନ୍ଧରେ ନାନାପ୍ରକାର ସନ୍ଦେହ ଥିବାରୁ ସେ ପ୍ରକୃତରେ କେବେ ଜନ୍ମଗ୍ରହଣ କରିଥିଲେ କହିବା କଷ୍ଟକର, ତେବେ କେତେକ ବିଶେଷଜ୍ଞଙ୍କ ମତରେ ସେ ଖ୍ରୀ:ପୂ: ୮୦୦ ମସିହାରେ ଜାତ ହେବା ସମ୍ଭବ । ବେଦ ପୁରାଣ ଆଦିରେ ତାଙ୍କ ପିତା ଅତ୍ରିଙ୍କ ନାମ ଦୃଷ୍ଟିଗୋଚର ହୁଏ । ସେ ଜ୍ୟୋତିଃଶାସ୍ତ୍ରର ଜଣେ ପ୍ରଧାନ ପ୍ରବର୍ତ୍ତକ ଭାବରେ ଖ୍ୟାତ । ଅତ୍ରି ଜ୍ୟୋତିର୍ବିଦ୍‌ମାନଙ୍କ ଭିତରେ ଏତେ ପ୍ରସିଦ୍ଧ ଥିଲେ ଯେ ସପ୍ତର୍ଷିମଣ୍ଡଳର ଏକ ତାରକା ଏହାଙ୍କ ନାମାନୁସାରେ ନାମିତ । 'ଅତ୍ରିସଂହିତା' ନାମକ ଏକ ପ୍ରକାଣ୍ଡ ଜ୍ୟୋତିଷ ଗ୍ରନ୍ଥ ଅତ୍ରି ଲେଖିଥିବା ଜଣାଯାଏ । ସମ୍ଭବତଃ ଏହି ଗ୍ରନ୍ଥ ମିଳୁ ନାହିଁ । ଏହା କାଳକ୍ରମେ ନଷ୍ଟ ହୋଇଯାଇଛି ।

ଅତ୍ରିଙ୍କ ସ୍ତ୍ରୀ ଅନୁସୂୟାଙ୍କ ଗର୍ଭରୁ ଆତ୍ରେୟ ସମ୍ଭୂତ । ସେ ପିତାଙ୍କ ଭଳି ଜ୍ୟୋତିର୍ବିଦ ନ ହୋଇ ଜଣେ ଚିକିତ୍ସାବିତ୍ ଭାବରେ ଖ୍ୟାତି ଲଭିଥିଲେ । ଭାରତର ଆଦି ଚିକିତ୍ସାବିତ୍ ଭରଦ୍ୱାଜଙ୍କ ଶିଷ୍ୟ ଭାବରେ ଆତ୍ରେୟ ପ୍ରସିଦ୍ଧି ଲଭିଥିଲେ । ଭରଦ୍ୱାଜ ଦୁଇଶହବର୍ଷରୁ ଊର୍ଦ୍ଧକାଳ ବଞ୍ଚିଥିଲେ । ଚରକସଂହିତା ଅନୁସାରେ ଭରଦ୍ୱାଜ ହେଉଛନ୍ତି ପ୍ରଥମ ଚିକିତ୍ସାବିତ୍ ଯେ କି ଚିକିତ୍ସା ବିଜ୍ଞାନର ପ୍ରଥମ ଅଧ୍ୟାପକ ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ଆଉ କେତେକଙ୍କ

ମତରେ ଆତ୍ରେୟଙ୍କ ଅନ୍ୟନାମ ହେଉଚି ପୁନର୍ବସୁ । ସେ ଭରଦ୍ୱାଜଙ୍କ ଶିଷ୍ୟ ଥିଲେ । ପରେ ଆତ୍ରେୟ ଭାବରେ ପରିଚିତ ହେଲେ ।

ଆତ୍ରେୟ ଜଣେ ପ୍ରସିଦ୍ଧ ଚିକିତ୍ସାବିତ୍ ଓ ଅଧ୍ୟାପକ ଥିଲେ । ଆଦି ଚିକିତ୍ସାବିତ୍ ଭରଦ୍ୱାଜଙ୍କ ଠାରୁ ଶିକ୍ଷା ପାଇ ସେ ଗୁଡ଼ିଏ ଶିଷ୍ୟଙ୍କୁ ଚିକିତ୍ସାବିଜ୍ଞାନ ଶିକ୍ଷା ଦେଇଥିଲେ । ତାଙ୍କ ଶିଷ୍ୟମାନଙ୍କ ଭିତରେ ଅଗ୍ନିବେଶ, ଜତୁକର୍ଣ୍ଣ, କ୍ଷାରପାଣି, ପରାଶର ଆଦି ପ୍ରଧାନ । ଆତ୍ରେୟଙ୍କ ବହୁ ପରେ ଚରକସଂହିତା ଲେଖା ହୋଇଥିଲା ଓ ଏଥିରେ ଆତ୍ରେୟଙ୍କ ରଚନା ଓ ବିଚାର ଆଦି ସ୍ଥାନ ପାଇଥିଲା ।

ଆତ୍ରେୟଙ୍କ ଆଶ୍ରମ ସମ୍ଭବତଃ ହିମାଳୟ ଦେଶରେ ଥିଲା । ଆତ୍ରେୟଙ୍କ ଲିଖିତ 'ଆତ୍ରେୟ ସଂହିତା' ଚିକିତ୍ସାବିଜ୍ଞାନରେ ଏକ ମୂଲ୍ୟବାନ ଗ୍ରନ୍ଥ । ଆତ୍ରେୟ ରୋଗକୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରିଥିଲେ, ଯଥା ଭଲ ହୋଇପାରୁଥିବା ରୋଗ, ଭଲ ନ ହୋଇ ପାରୁଥିବା ରୋଗ, ଗୁଣି ଗାରେଡି ଦ୍ୱାରା ଭଲ ହୋଇପାରୁଥିବା ରୋଗ ଓ କଷ୍ଟରେ ଭଲ ହୋଇ ପାରୁଥିବା ରୋଗ । ପବନ, ମୃତ୍ତିକା, ଋତୁ ଆଦିର ମଣିଷ ଶରୀର ଉପରେ ପ୍ରଭାବ ଥିବା କଥା ସେ ପ୍ରଚାର କରିଥିଲେ । ଆତ୍ରେୟଙ୍କ ମତରେ ସ୍ୱାଦ ଛଅପ୍ରକାର, ଯଥା– ମିଠା, ଖଟା, ପିତା, କଷା, ଲୁଣିଆ ଆଦି । ଜଳର ମଧ୍ୟ ସେ ଶ୍ରେଣୀ ବିଭାଗ କରିଥିଲେ ଓ ଶରୀର ଉପରେ ଏହି ବିଭିନ୍ନ ପ୍ରକାର ଜଳର ପ୍ରଭାବ ଥିବା କଥା ସେ ବର୍ଣ୍ଣନା କରିଛନ୍ତି । ବିଭିନ୍ନ ରୋଗରେ ଥଣ୍ଡା ଓ ଉଷୁମ ଜଳର ବ୍ୟବହାର ସେ ଉଲ୍ଲେଖ କରିଛନ୍ତି । ବିଭିନ୍ନ ପ୍ରାଣୀଠାରୁ ଉତ୍ପନ୍ନ ଦୁଧ, ଆଖୁ, ମହୁ, ବିଭିନ୍ନ ପ୍ରକାର ତେଲ, ନାନା ପ୍ରକାର ଚେରମୂଳୀ, ଗୁଡ଼ରୁ ତିଆରି ହେଉଥିବା ମଦର ରୋଗ ଉପଶମ କ୍ଷମତା ସେ ତାଙ୍କ ଶାସ୍ତ୍ରରେ

ବର୍ଣ୍ଣନା କରିଛନ୍ତି । ସେ ବିଭିନ୍ନ ପ୍ରକାର ମାଂସର ଉପାଦେୟତା ବର୍ଣ୍ଣନା କରିଛନ୍ତି ଓ କେଉଁ କେଉଁ ମାଂସର ଉପକାରିତା କେତେ ସେ ତାହା ଆଲୋଚନା କରିଛନ୍ତି । ସେ ଭଲ ଓ ଖରାପ ସ୍ୱପ୍ନର ମଣିଷ ଉପରେ ପ୍ରଭାବ ସମ୍ବନ୍ଧରେ ଆଲୋଚନା କରିଥିଲେ । ବିଭିନ୍ନ ପ୍ରକାର ଜ୍ୱର, ଝାଡ଼ା, ଆମାଶୟ, ଯକ୍ଷ୍ମା ଆଦିର ଶ୍ରେଣୀ ବିଭାଗ କରିଛନ୍ତି ଓ ସେଗୁଡ଼ିକର ଚିକିତ୍ସା ସମ୍ପର୍କରେ ନାନା ଆଲୋଚନା କରିଅଛନ୍ତି । ବିଭିନ୍ନପ୍ରକାର ବିଷପ୍ରଭାବକୁ ହରଣ କରିବା ପାଇଁ ସେ ନାନା ପ୍ରକାର ବିଷଘ୍ନର ଉଦାହରଣ ଦେଇଛନ୍ତି ।

ଚିକିତ୍ସାବିଜ୍ଞାନର ଅଧ୍ୟାପକ ଭାବରେ ଆତ୍ରେୟଙ୍କ ଦକ୍ଷତା ଅତୁଳନୀୟ । ଚିକିତ୍ସାବିଜ୍ଞାନ ଶିକ୍ଷାଦେବା ପାଇଁ ତାଙ୍କ ପଦ୍ଧତି ଅତି ଉଚ୍ଚକୋଟୀର । ଗ୍ରୀକ୍‌ମାନଙ୍କ ଚିକିତ୍ସାବିଜ୍ଞାନକୁ ହିପୋକ୍ରେଟାସଙ୍କ ଦାନ, ଯେମିତି ଭାରତୀୟ ଚିକିତ୍ସା ଶାସ୍ତ୍ରକୁ ଆତ୍ରେୟଙ୍କ ଦାନ ଠିକ୍ ସେମିତି । ହିପୋକ୍ରେଟାସଙ୍କ ଭଳି ସେ ମୂର୍ଚ୍ଛାରୋଗକୁ ଭଗବାନ୍‌ଙ୍କ ଅଭିପ୍ରେତ ବୋଲି ଭାବୁ ନ ଥିଲେ । ମଣିଷ ପାଗଳ ହେଲେ ଏହାପଛରେ ଭଗବାନ୍‌ଙ୍କ ଅଭିଶାପ ନାହିଁ ବୋଲି ସେ ପ୍ରଚାର କରୁଥିଲେ । ଏଗୁଡିକ ଶରୀରର କେତେକ କାରଣବଶତଃ ଜାତ ହୋଇଥାଏ ଓ ଏହାକୁ ଯଥାରୀତି ଚିକିତ୍ସା କଲେ ଏହି ରୋଗ ଭଲ ହୋଇଯାଏ । ଦେବଦେବୀଙ୍କ ରାଗ ରୋଷ ସହିତ ଏସବୁ ରୋଗର କିଛି ସମ୍ବନ୍ଧ ନାହିଁ ବୋଲି ସେ ପ୍ରଚାର କରୁଥିଲେ ।

## ଏକାଦଶ ଅଧ୍ୟାୟ

# ମହର୍ଷି ଗର୍ଗ

ବେଦ ଅନୁସାରେ ମହର୍ଷି ଗର୍ଗ ହେଉଛନ୍ତି ସର୍ବପ୍ରଥମ ଜ୍ୟୋତିର୍ବିଦ ଯେ କି ଆକାଶର ନକ୍ଷତ୍ରରାଜିକୁ ଅଠେଇଶି ଗୋଟି ମଣ୍ଡଳରେ ବିଭକ୍ତ କରିଥିଲେ । ଅଥର୍ବ ବେଦରେ ଗର୍ଗଙ୍କ ସମ୍ବନ୍ଧରେ ଯଥେଷ୍ଟ ଉଲ୍ଲେଖ ମିଳେ । ଅନେକଙ୍କ ମତରେ ମହର୍ଷି ଗର୍ଗ ଜଣେ ସିଦ୍ଧତପା ଓ ଜ୍ୟୋତିଷ ଶାସ୍ତ୍ରର ପ୍ରଧାନ ଆବିଷ୍କାରକ । ମହାଭାରତ ଅନୁସାରେ ଏହି ମହର୍ଷିଙ୍କୁ କୃଷ୍ଣଙ୍କ ଭାଇ ବଳରାମ ତୀର୍ଥଯାତ୍ରାକୁ ଯାଇ ଗର୍ଗସ୍ରୋତା ମହାତୀର୍ଥରେ ଏହାଙ୍କୁ ଭେଟିଥିଲେ । ଏହି ଋଷି ସେତେବେଳେ ନିଜ ଗଣନା ସାହାଯ୍ୟରେ କାଳ ନିରୂପଣ ପ୍ରଣାଳୀ, ଗ୍ରହନକ୍ଷତ୍ରାଦିର ଗତିବିଧି ଆଦି ନିର୍ଣ୍ଣୟ କରିପାରୁଥିଲେ । ବହୁ ଶିଷ୍ୟ ତାଙ୍କଠାରୁ ଏହିସବୁ ଗଣନା ଶିକ୍ଷା କରୁଥିଲେ, ସେହି ଗର୍ଗସ୍ରୋତାରୁ ତାଙ୍କ ନାମ ଗର୍ଗ ହୋଇଥିବା ସମ୍ଭବ ।

ଗର୍ଗଙ୍କ କାଳ ନିରୂପଣ ଅତୀବ କଷ୍ଟକର । ମହାଭାରତରେ ଗର୍ଗଙ୍କ ସମ୍ବନ୍ଧରେ ଉଲ୍ଲେଖ ଅଛି ଯେ ସେ ଅର୍ଜ୍ଜୁନଙ୍କର ଜ୍ୟୋତିଷ ଥିଲେ । କୃଷ୍ଣଙ୍କର କୋଷ୍ଠି ରଚନା ସେ କରିଥିଲେ । ତାଙ୍କ ରଚିତ ଗର୍ଗସଂହିତା ଜ୍ୟୋତିଷ ଶାସ୍ତ୍ରରେ ଏକ ଅମୂଲ୍ୟ ଗ୍ରନ୍ଥ । ଏହି ଗ୍ରନ୍ଥଟି ବର୍ତ୍ତମାନ ପୂରାଭାବରେ ମିଳୁ ନାହିଁ । ଗର୍ଗଙ୍କ ପରେ ଏହା ପୁନର୍ବାର ରଚିତ ହୋଇଥିବାର ଜଣାଯାଏ । ଏହି ପରବର୍ତ୍ତୀ ଗର୍ଗସଂହିତାରେ ଗ୍ରୀକ୍‌ମାନେ ଭାରତ ଆକ୍ରମଣ କରିବା କଥା ଉଲ୍ଲେଖ ଅଛି ।

ଗ୍ରୀକ୍‌ମାନଙ୍କୁ ଶକମାନେ କିଭଳି ଆକ୍ରମଣ କଲେ, ସେ କଥାସବୁ ସେଥିରେ ବର୍ଣ୍ଣିତ ହୋଇଅଛି । ଏସବୁ ଐତିହାସିକ ଘଟଣା ଖ୍ରୀ:ପୂ: ତୃତୀୟ ଶତାବ୍ଦୀର କଥା । ପ୍ରକୃତରେ ଗର୍ଗ ଏହାର ଢେର ପୂର୍ବରୁ ଜନ୍ମଗ୍ରହଣ କରିଥିଲେ । କୃଷ୍ଣଙ୍କୁ ଯଦି ଖ୍ରୀ:ପୂ: ଦଶମ ବା ପଞ୍ଚଦଶ ଶତାବ୍ଦୀର ବୋଲି ଧରାଯାଏ, ତେବେ ଗର୍ଗ ସେହି ସମୟର ବୋଲି ଅନୁମାନ କରାଯାଇପାରେ । ସେ ଯଦୁମାନଙ୍କର ପୁରୋହିତ ଥିଲେ ଓ ବସୁଦେବଙ୍କ ଦ୍ୱାରା ପ୍ରେରିତ ହୋଇ ନନ୍ଦଙ୍କ ଘରକୁ ଯାଇ ରାମ-କୃଷ୍ଣଙ୍କର ଜାତକ ତିଆରି କରିଥିଲେ ।

ସୂର୍ଯ୍ୟ ଆକାଶର ଯେଉଁ ବୃତ୍ତରେ ଗତି କରନ୍ତି ସେହି ବୃତ୍ତର ନକ୍ଷତ୍ରମାନଙ୍କୁ ସେ ପ୍ରଥମେ ଅଠେଇଶି ଗୋଟି ନକ୍ଷତ୍ରମଣ୍ଡଳରେ ବିଭକ୍ତ କରିଥିଲେ । ଗଣନାରେ କେତେକ ଅସୁବିଧା ହେବାରୁ ଗର୍ଗ ନକ୍ଷତ୍ରମଣ୍ଡଳଗୁଡ଼ିକୁ ଅଠେଇଶିରୁ ସତେଇଶିକୁ କମାଇ ଦେଇଥିଲେ । ଏହି ନକ୍ଷତ୍ରମଣ୍ଡଳରେ ବର୍ଷର ବିଭିନ୍ନ ଦିନରେ ସୂର୍ଯ୍ୟ, ଚନ୍ଦ୍ର ଓ ଗ୍ରହମାନେ ଅବସ୍ଥାନ କରନ୍ତି । ଗ୍ରହଚଳନ ଆଦି ସମ୍ବନ୍ଧରେ ବହୁ ଗଣନା ଏହି ନକ୍ଷତ୍ରମଣ୍ଡଳକୁ ନେଇ ରଚିତ । ଗଣିତ ଜ୍ୟୋତିଷରୁ ଫଳିତ ଜ୍ୟୋତିଷର ଉତ୍ପତ୍ତି ସମ୍ଭବତଃ ଏହି ସମୟରେ । ମଣିଷର ଭାଗ୍ୟ ଉପରେ ଗ୍ରହ, ନକ୍ଷତ୍ରମାନଙ୍କର ପ୍ରଭାବ ଫଳରେ ଜାତକ ସୃଷ୍ଟି ଓ ଭବିଷ୍ୟତବାଣୀ ଆଦି ଏହି ସମୟର ବୋଲି ଧରାଯାଇପାରେ । କୃଷ୍ଣ ବଳରାମଙ୍କଠାରୁ ଆରମ୍ଭ କରି ଅର୍ଜୁନ, ଯୁଧିଷ୍ଠିର ଆଦିଙ୍କ ଉପରେ ଫଳିତ ଜ୍ୟୋତିଷର ପ୍ରଭାବ ବେଶ୍ ଭଲଭାବରେ ଥିଲା, କାରଣ ସେମାନଙ୍କର ସେଥିରେ ପ୍ରଗାଢ଼ ବିଶ୍ୱାସ ଥିଲା । ଗ୍ରହ, ନକ୍ଷତ୍ରଙ୍କ ଗତି ଅନୁସାରେ ଜାତକ ବା କୋଷ୍ଠୀକୁ ମିଳାଇ ଶୁଭାଶୁଭକାଳ ନିର୍ଣ୍ଣୟ ଏହି ଯୁଗରେ ବେଶ୍ ଜୋରସୋରରେ ଚାଲିଥିଲା ଓ ଏହିସବୁ ମୂଳରେ ଗର୍ଗଙ୍କ ହାତ ବିଶେଷ ଭାବରେ ଥିଲା ।

## ଦ୍ୱାଦଶ ଅଧ୍ୟାୟ

# ମହାଜ୍ୟୋତିଷୀ ଲଗଧ ଋଷି

ପୃଥିବୀର ଆଦି ଜ୍ୟୋତିଷୀମାନଙ୍କ ଭିତରୁ ଲଗଧ ଋଷି ସବୁଠାରୁ ପ୍ରାଚୀନ ବୋଲି ଧରାଯା'ନ୍ତି । ସେ କାଶ୍ମୀର ଅଧିବାସୀ ଥିବାର ଜଣାଯାଏ । ଖ୍ରୀ:ପୂ: ନବମ ଶତାବ୍ଦୀରେ ସେ ପ୍ରସିଦ୍ଧି ଅର୍ଜନ କରିଥିଲେ । ଲଗଧ ଋଷିଙ୍କ ସମୟରେ ଜ୍ୟୋତିଷଶାସ୍ତ୍ର ସବୁଠାରୁ ସମ୍ମାନାସ୍ପଦ ଶାସ୍ତ୍ର ଭାବରେ ପରିଗଣିତ ହେଉଥିଲା । ଯାଗ-ଯଜ୍ଞ ଆଦି କରିବା ପୂର୍ବରୁ ଭଲ ସମୟ ନିର୍ଦ୍ଧାରଣରେ ଏହି ଶାସ୍ତ୍ର ସାହାଯ୍ୟ କରୁଥିବାରୁ ଏହି ଶାସ୍ତ୍ରକୁ ବହୁ ଶାସ୍ତ୍ର ମଧ୍ୟରେ ଖୁବ୍ ଉଚ୍ଚ ଆସନ ଦିଆଯାଉଥିଲା ।

ପ୍ରଧାନ ଜ୍ୟୋତିଷ ବେଦାଙ୍ଗ ଋକ୍ ଜ୍ୟୋତିଷର ପ୍ରଣେତା ହେଉଛନ୍ତି ଲଗଧ । ସେ ତାଙ୍କର ଏହି ଗ୍ରନ୍ଥରେ ସତେଇଶଗୋଟି ନକ୍ଷତ୍ରମଣ୍ଡଳ କଥା ଉଲ୍ଲେଖ କରିଛନ୍ତି । ପ୍ରତ୍ୟେକ ନକ୍ଷତ୍ରମଣ୍ଡଳରେ ସୂର୍ଯ୍ୟଚନ୍ଦ୍ରର ଅବସ୍ଥାନ ସଂପର୍କରେ ନାନା ଗଣନା ରହିଛି । ଲଗଧଙ୍କ ମତାନୁସାରେ ପାଞ୍ଚବର୍ଷରେ ଗୋଟିଏ ଯୁଗ ହୁଏ । ପ୍ରତ୍ୟେକ ଯୁଗରେ ୧୮୩୦ ଦିନ ଥାଏ । ପ୍ରତ୍ୟେକ ମାସ ୩୦ ଦିନ ଓ ବାର-ମାସରେ ଗୋଟିଏ ବର୍ଷ । ତେଣୁ ପ୍ରତି ପାଞ୍ଚବର୍ଷରେ ଗୋଟିଏ ମାସ ଅଥବା ୩୦ ଦିନ ବଳିପଡ଼େ । ଏହି ମାସ ହେଉଛି ମଳମାସ । ବର୍ଷକ ଛଅଋତୁ, ପ୍ରତ୍ୟେକ ଋତୁ ଦୁଇମାସ । ସେ ଯୁଗରେ ଜଳଘଡ଼ିର ପ୍ରଚଳନ ଥିଲା । ଜଳଘଡ଼ି ସାହାଯ୍ୟରେ ସେ ସମୟ ମାପୁଥିଲେ ।

ଚାନ୍ଦ୍ରମାସ ସାଢ଼େ ଅଣତିରିଶ ଦିନ ବୋଲି ଲଗଧ ଗଣନା କରିଥିଲେ । ଚାନ୍ଦ୍ରମାସ ଅନୁସାରେ ପ୍ରତି ଯୁଗରେ ଦୁଇଟି ଅଧିକା ଚାନ୍ଦ୍ରମାସ ହୁଏ, ଫଳରେ ସେ ଦୁଇଟି ହେଉଛି ମଳ ମାସ । ପଞ୍ଜିକା ରଚନାର ପ୍ରାଥମିକ ରୀତି ଓ ନିୟମ ତାଙ୍କ ଏହି ଜ୍ୟୋତିଷ ବେଦାଙ୍ଗରେ ବର୍ଣ୍ଣିତ ଅଛି ।

କେତେକଙ୍କ ମତରେ ବେଦାଙ୍ଗ ଜ୍ୟୋତିଷ ରଚନା ହେବାର କାଳ ହେଉଛି ଖ୍ରୀ:ପୂ: ପଞ୍ଚଦଶ ଶତାବ୍ଦୀ । ତେଣୁ ଲଗଧଙ୍କୁ ସେହି ସମୟର ବୋଲି ଗଣନା କରାଯାଇପାରେ । କିନ୍ତୁ ଅନେକ ଲଗଧଙ୍କୁ ଏତେ ପୁରାତନ ବୋଲି ମନେ କରନ୍ତି ନାହିଁ ।

## ତ୍ରୟୋଦଶ ଅଧ୍ୟାୟ

# ମହା ଚିକିତ୍ସାବିତ୍ ଜୀବକ

ଜୀବକ ହେଉଛନ୍ତି ଖ୍ରୀ:ପୂ: ଷଷ୍ଠ ଓ ପଞ୍ଚମ ଶତାବ୍ଦୀର ଚିକିତ୍ସାବିତ୍ । ବୁଦ୍ଧଦେବଙ୍କ ଜୀବଦ୍ଦଶା ବେଳେ ସେ ଚିକିତ୍ସାବିତ୍‌ଭାବରେ ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ । ସେ ମଗଧର ରାଜା ବିମ୍ବିସାର ଓ ବୁଦ୍ଧଦେବଙ୍କର ଚିକିତ୍ସକ ଥିଲେ । ତେଣୁ ତାଙ୍କ ବିଷୟରେ ବୌଦ୍ଧଶାସ୍ତ୍ରରେ ବିଶଦ ଭାବରେ ଉଲ୍ଲେଖ ଅଛି । ସାରା ଭାରତରେ ସେତେବେଳେ ତାଙ୍କ ଭଳି ସୁଦକ୍ଷ ଚିକିତ୍ସକ ନ ଥିଲେ । ସେଥିପାଇଁ ତାଙ୍କର ଅପୂର୍ବ ଖ୍ୟାତି ଥିଲା । ସେ ରୋଗ ଚିକିତ୍ସା ପାଇଁ ଯେଉଁ ପାରିଶ୍ରମିକ ରାଜାମହାରାଜା ଓ ଧନୀ ଲୋକମାନଙ୍କଠାରୁ ନେଉଥିଲେ, ତାହା ମଧ୍ୟ ଅତି ବିରାଟ ଆକାରର ଥିଲା । ଗରିବ ଲୋକମାନଙ୍କୁ ସେ ବିନା ପାରିଶ୍ରମିକରେ ଚିକିତ୍ସା କରୁଥିଲେ । ତାଙ୍କ ପ୍ରସିଦ୍ଧି ସାରା ଭାରତରେ ଏତେ ବ୍ୟାପି ଯାଇଥିଲା ଯେ ହଜାର ହଜାର ମାଇଲ ଦୂରରୁ ରୋଗୀମାନେ ତାଙ୍କ ପାଖକୁ ଚିକିତ୍ସିତ ହେବାକୁ ଆସୁଥିଲେ ।

ଜୀବକଙ୍କ ଜୀବନ ବୃତ୍ତାନ୍ତ ଅନ୍ଧକାରାଚ୍ଛନ୍ନ । ଜୀବକଙ୍କ ମାତା ହେଉଛନ୍ତି ମଗଧର ଅନନ୍ୟସୁନ୍ଦରୀ ରାଜନର୍ତ୍ତକୀ ଶାଳବତୀ । ସେ ମଗଧର ରାଜଧାନୀ ପାଟଳୀପୁତ୍ରରେ ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠତମ ସୁନ୍ଦରୀ ଭାବରେ ଖ୍ୟାତି ଲଭିଥିଲେ । କେତେକଙ୍କ ମତରେ ସେ ଆର୍ଯ୍ୟାବର୍ତ୍ତର ଅନ୍ୟତମ ନର୍ତ୍ତକୀ ଆମ୍ରପଲ୍ଲୀ ଠାରୁ ଅଧିକ ସୁନ୍ଦରୀ ଓ

ନୃତ୍ୟନିପୁଣା ଥିଲେ । କଥିତ ଅଛି ଜୀବକ ଜାତ ହେବା ପରେ ତାଙ୍କୁ ଅଳିଆଗଦାକୁ ଫୋପାଡି ଦିଆଯାଇଥିଲା । କେତେକ ଲୋକ ସେହି ନବଜାତ ଶିଶୁଟିକୁ ଜୀବିତ ଥିବାର ଦେଖି ମଗଧର ରାଜା ବିମ୍ବିସାରଙ୍କ ପୁତ୍ର ଅଭୟଙ୍କୁ ଦାନ କରିଥିଲେ । ସେ ଅଳିଆଗଦାରେ ଜୀବିତ ଥିବାରୁ ତାଙ୍କ ନାଁ ଜୀବକ ହୋଇଥିବାର ଅନୁମାନ । ସେହି କାରଣରୁ ରାଜପୁତ୍ର ଏହି ଶିଶୁଟିର ନାମ ଜୀବକ ଦେଇଥିଲେ । ରାଜପୁତ୍ର ଅଭୟ ବିବାହ ନ କରିଥିଲେ ହେଁ ସେ ଜୀବକଙ୍କୁ ନିଜ ପୁତ୍ର ଭଳି ପାଳିଥିଲେ । ସେଥିପାଇଁ ଜୀବକଙ୍କୁ କୁହାଯାଉଥିଲା 'ଜୀବକ କୁମାରବଚ୍ଚା ।'

ଜୀବକ ଯେତେବେଳେ ବଡ଼ ହୋଇଗଲେ ସେ ନିଜ ଜୀବନ ବୃତ୍ତାନ୍ତ ଜାଣିଲେ । ରାଜପୁତ୍ର ଯେ ତାଙ୍କର ପ୍ରକୃତ ବାପା ନୁହନ୍ତି ଜାଣି ସେ ଦିନେ କାହାରିକୁ କିଛି ନ କହି ଘରୁ ବାହାରିଗଲେ । ସେ ଯାଇ ପହଞ୍ଚିଲେ ତକ୍ଷଶିଳାରେ । ସେତେବେଳେ ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ଶିକ୍ଷାକେନ୍ଦ୍ର ହେଉଛି ତକ୍ଷଶିଳା । ସେଠାରେ ଏକ ସୁପ୍ରସିଦ୍ଧ ବିଶ୍ୱବିଦ୍ୟାଳୟ ଥିଲା । ବର୍ତ୍ତମାନର ପାକିସ୍ଥାନର ରାଓଲପିଣ୍ଡିଠାରେ ସେ ଯୁଗର ତକ୍ଷଶିଳା ନଗରୀ ଅବସ୍ଥିତ ଥିଲା । ଜୀବକ ତକ୍ଷଶିଳା ବିଶ୍ୱବିଦ୍ୟାଳୟରେ ସାତବର୍ଷ ଚିକିତ୍ସାବିଜ୍ଞାନ ଅଧ୍ୟୟନ କଲେ ।

କଥିତ ଅଛି, ତାଙ୍କର ଶେଷ ପରୀକ୍ଷାରେ ତାଙ୍କ ଗୁରୁ ତାଙ୍କୁ କହିଲେ ତକ୍ଷଶିଳା ଠାରୁ ଚାରିଯୋଜନ ଦୂରକୁ ଯିବାପାଇଁ । ଚାରିଯୋଜନ ବ୍ୟବଧାନରେ ଯେତେ ଉଦ୍ଭିଦ ଅଛି ସେଗୁଡିକୁ ପରୀକ୍ଷା କରିବେ । ସେଥିଭିତରୁ ସେ ଏମିତି ଗୋଟିଏ ଗଛ ଆଣିବେ ଯା'ର ଔଷଧିଗୁଣ ନାହିଁ । ଜୀବକ ଏହି ଚାରିଯୋଜନ ବ୍ୟବଧାନରେ ଥିବା ସବୁ ଉଦ୍ଭିଦକୁ ପରୀକ୍ଷା କଲେ । ସେ ସେଥିଭିତରୁ ଗୋଟିଏ ସୁଦ୍ଧା

ଗଛ ପାଇଲେ ନାହିଁ ଯା'ର ଔଷଧିଗୁଣ ନାହିଁ । ବଡ଼ ମନକଷ୍ଟରେ ଫେରିଆସି ଗୁରୁଙ୍କୁ ସେକଥା କହିଲେ । ଏଥିରେ ଗୁରୁ ତାଙ୍କପ୍ରତି ଖୁବ୍ ପ୍ରୀତ ହୋଇ ତାଙ୍କୁ ପରୀକ୍ଷାରେ ଉତ୍ତୀର୍ଣ୍ଣ କରାଇଦେଲେ ଓ ଭବିଷ୍ୟତରେ ଏକ ଦକ୍ଷ ଚିକିତ୍ସକ ହୁଅ ବୋଲି ଆଶୀର୍ବାଦ କରି ତକ୍ଷଶିଳାରୁ ବିଦାୟ ଦେଲେ । ତାଙ୍କ ଘରଠାରେ ପହଞ୍ଚିବାପାଇଁ ଗୁରୁ ମଧ ତାଙ୍କୁ ଅଳ୍ପ କିଛି ଅର୍ଥ ସାହାଯ୍ୟ ଦେଇଥିଲେ । ସେହି ଅର୍ଥ ନେଇ ଘରକୁ ଫେରିବା ବାଟରେ ସାକେତ ଠାରେ ସେହି ଅର୍ଥ ଶେଷ ହୋଇଗଲା । ସାକେତ ହେଉଛି ବର୍ତ୍ତମାନର ଉତ୍ତରପ୍ରଦେଶର ଫାଇଜାବାଦ୍ ଅନ୍ତର୍ଗତ ଏକ ସହର । ସେଠାରେ ଜୀବକ କିଛି ଅର୍ଥ ଉପାର୍ଜନ ପାଇଁ କବିରାଜି ଆରମ୍ଭ କରିଦେଲେ ।

ସାକେତ ଠାରେ ଜୀବକଙ୍କର ପ୍ରଥମ ରୋଗୀ ହେଉଛନ୍ତି ଜଣେ ଧନୀ ବ୍ୟବସାୟୀଙ୍କ ପତ୍ନୀ । ସେ ସାତବର୍ଷ ଧରି ମୁଣ୍ଡର ଏକ ରୋଗରେ କଷ୍ଟ ପାଉଥିଲେ । ବହୁ ପ୍ରସିଦ୍ଧ ଚିକିତ୍ସାବିତ୍ ତାଙ୍କୁ ଚିକିତ୍ସା କରି ଭଲ କରି ପାରିଲେ ନାହିଁ । ଜୀବକ ସେହି ରୋଗୀଙ୍କୁ ଚିକିତ୍ସା କରି ତାଙ୍କୁ ଭଲ କରିଦେଲେ । ଏଥିପାଇଁ ଜୀବକଙ୍କୁ ଅସଂଖ୍ୟ ସ୍ୱର୍ଣ୍ଣମୁଦ୍ରା, ଗୋଟିଏ ଚାକର ଗୋଟିଏ ଚାକରାଣୀ ଓ ଗୋଟିଏ ଘୋଡ଼ାଗାଡ଼ି ଉପହାର ମିଳିଲା । ସେହି ଅର୍ଥରେ ସେ ସୁରୁଖୁରୁରେ ତାଙ୍କ ଜନ୍ମସ୍ଥାନ ରାଜଗୃହରେ ପହଞ୍ଚିପାରିଲେ । ସେ ରାଜଗୃହରେ ପହଞ୍ଚି ରାଜପୁତ୍ର ଅଭୟଙ୍କୁ ନିଜ ଉପାର୍ଜିତ ଧନ ସମର୍ପଣ କଲେ । ଏଥିରେ ରାଜପୁତ୍ର ଅତ୍ୟନ୍ତ ପ୍ରୀତ ହୋଇ ତାଙ୍କୁ ନିଜ ପ୍ରାସାଦରେ ରଖାଇଲେ ।

ସେତେବେଳେ ମଗଧର ମହାରାଜା ବିମ୍ବିସାରଙ୍କୁ ଭଗନ୍ଦର ରୋଗ ହୋଇଥିଲା । ତାଙ୍କ ଝାଡ଼ାଫେରା ନଳୀରେ ରକ୍ତ ବାହାରି ତାଙ୍କ

ଲୁଗାପଟାରେ ରକ୍ତ ଲାଗି ଯାଉଥିଲା । ଦିନେ ମହାରାଜାଙ୍କ ରାଣୀମାନେ ମହାରାଜାଙ୍କ ଲୁଗାରେ ରକ୍ତ ଦେଖି ତାଙ୍କୁ ଥଟ୍ଟା କଲେ ଓ ମହାରାଜାଙ୍କର ଋତୁସ୍ରାବ ହୋଇଛି ବୋଲି କହିଲେ । ଏହି ଋତୁସ୍ରାବ ପରେ ମହାରାଜା ମଧ୍ୟ ପିଲା ପ୍ରସବ କରିବେ ବୋଲି ସେମାନେ ଉପହାସ ଛଳରେ କହିଲେ । ଏଥିରେ ମହାରାଜା ବିମ୍ବିସାର ଅତ୍ୟନ୍ତ ବିବ୍ରତ ହୋଇପଡ଼ିଲେ ଓ କେମିତି ଭଲହେବେ ଚିନ୍ତାକଲେ । ଏହି ସମୟରେ ଜୀବକ ତାଙ୍କୁ ପରୀକ୍ଷା କରି ଔଷଧ ଦେଇ ଭଲ କରିଦେଲେ । ଏଥିରେ ପ୍ରୀତହୋଇ ମହାରାଜା ବିମ୍ବିସାର ତାଙ୍କର ପାଞ୍ଚଶହ ରାଣୀଙ୍କର ସମସ୍ତ ଅଳଙ୍କାର ଜୀବକଙ୍କୁ ଉପହାର ଦେଲେ ଓ ତାଙ୍କୁ ରାଜବୈଦ୍ୟ ପଦରେ ଅଭିଷିକ୍ତ କଲେ । ସେଥିସହ ସେ ବୁଦ୍ଧଦେବ ଓ ବୌଦ୍ଧଶ୍ରମଣଙ୍କର ଚିକିତ୍ସକ ଭାବରେ ନିଯୁକ୍ତି ପାଇଲେ ।

ଅବନ୍ତୀର ମହାରାଜା ପ୍ରଦ୍ୟୋତ ଥରେ କାମଳ ରୋଗରେ ଆକ୍ରାନ୍ତ ହୋଇଥିଲେ । ସେ ଜୀବକଙ୍କ ଚିକିତ୍ସାରେ ଭଲ ହୋଇଯିବାରୁ ଜୀବକଙ୍କୁ ଅଜସ୍ର ଧନରତ୍ନ ଉପହାର ଦେଇଥିଲେ । ସେଥିଭିତରୁ ତାଙ୍କଠାକୁ ମହାରାଜାଙ୍କଠାରୁ ଖଣ୍ଡିଏ ଅତି ଦୁର୍ଲଭ ଓ ମୂଲ୍ୟବାନ ଶିବେୟକ ବସ୍ତ୍ର ଉପହାର ଆସିଥିଲା । ଜୀବକ ଏହି ଲୁଗାଟିକୁ ଦେଖି ଅତ୍ୟନ୍ତ ପ୍ରୀତ ହୋଇ ବୁଦ୍ଧଦେବଙ୍କୁ ଉପହାର ଦେଇଥିଲେ ।

ଜୀବକ ବୁଦ୍ଧଦେବଙ୍କ ଚିକିତ୍ସକ ଥିଲେ । ସେଥିଯୋଗୁଁ ସେ ବୁଦ୍ଧଦେବଙ୍କ ଅତି ନିକଟ ଲୋକ ଥିଲେ । ପ୍ରତିଦିନ ସକାଳେ ବୁଦ୍ଧଦେବଙ୍କୁ ସାକ୍ଷାତ କରି ତାଙ୍କ ଶରୀରର କୁଶଳତା ପଚାରିବା ତାଙ୍କର ଏକ ପ୍ରଧାନ କର୍ତ୍ତବ୍ୟ ଥିଲା । ଥରେ ବୁଦ୍ଧଦେବଙ୍କୁ

କୋଷ୍ଠକାଠିନ୍ୟ ରୋଗ ଧରିଲା, ଭଲଭାବରେ ଝାଡ଼ା ହେଲା ନାହିଁ । ଜୀବକ ତାଙ୍କୁ ଝାଡ଼ା ହେବା ପାଇଁ ଗୋଟିଏ ଔଷଧ ଦେଲେ । ଆଉଥରେ ବୁଦ୍ଧଦେବଙ୍କୁ ତାଙ୍କ ଭାଇ ଦେବଦତ୍ତ ଗୋଟିଏ ପଥର ଫୋପାଡ଼ି ଖଣ୍ଡିଆ କରିପକାଇଥିଲା । ଦେବଦତ୍ତଙ୍କ ପଥର ମାଡ଼ରେ ବୁଦ୍ଧଦେବଙ୍କ ପାଦ ଖଣ୍ଡିଆ ହୋଇଯାଇଥିଲା । ବୁଦ୍ଧଦେବଙ୍କ ଶିଷ୍ୟମାନେ ବୁଦ୍ଧଦେବଙ୍କୁ ଗୋଟିଏ ସବାରିରେ ଜୀବକଙ୍କ ଆମ୍ରବନ ଚିକିତ୍ସାଳୟକୁ ନେଇଯାଇଥିଲେ । ଜୀବକ ତାଙ୍କ ପାଦରେ ଔଷଧ ଦେଇ ପଟି ବାନ୍ଧି ଦେଇଥିଲେ । ସେ ଅଳ୍ପ ଦିନ ଭିତରେ ଭଲ ହୋଇଗଲେ ।

ଜୀବକ ଅସ୍ତ୍ରୋପଚାରରେ ମଧ୍ୟ ପ୍ରବୀଣ ଥିଲେ । ସେ ମଧ୍ୟ ଆଧୁନିକ ରୀତିରେ ରୋଗୀକୁ ଅଚେତ୍ କରି ଭଲଭାବରେ ଶୋଧିତ ହୋଇଥିବା କକ୍ଷରେ ଶୋଧିତ ଯନ୍ତ୍ରପାତି ସାହାଯ୍ୟରେ ଅସ୍ତ୍ରୋପଚାର କରୁଥିଲେ । ପ୍ରାକୃତିକ ଗୋଡ଼ହାତ କଟି ଯାଇଥିଲେ, ସେ ତା ସ୍ଥାନରେ କୃତ୍ରିମ ଗୋଡ଼ ହାତ ଏମିତି ଭାବରେ ଲଗାଇ ପାରୁଥିଲେ, ଯେମିତିକି ରୋଗୀ ତାକୁ ନିଜର ପ୍ରାକୃତିକ ଗୋଡ଼ହାତ ଭଳି ବ୍ୟବହାର କରିପାରିବ । ନାକ, କାନ ଆଦି କଟି ଯାଇଥିଲେ ସେ ଆଧୁନିକ ପ୍ଲାଷ୍ଟିକ୍ସ ଅସ୍ତ୍ରୋପଚାର ଭଳି ଅସ୍ତ୍ରୋପଚାର କରି କୃତ୍ରିମ ନାକ, କାନ ଲଗାଇ ପାରୁଥିଲେ ଯେମିତି ଏହାକୁ କେହି କୃତ୍ରିମ ନାକ କାନ ବୋଲି କହିପାରିବେ ନାହିଁ । ସେ ପେଟ ଆଦି ଚିରି ପେଟର ଅଭ୍ୟନ୍ତରର ନାନାପ୍ରକାର ରୋଗ, କ୍ଷୁଦ୍ରାନ୍ତ୍ର, ବୃକ୍କ, ଅଗ୍ନ୍ୟାଶୟ, ଗର୍ଭାଶୟ ଆଦିର ରୋଗ ଦୂର କରିପାରୁଥିଲେ । ବୃକ୍କ ବା ପରିସ୍ରା ଯନ୍ତ୍ରରେ ପଥର ଜନ୍ମିଥିଲେ ସେ ତାହାକୁ ଅସ୍ତ୍ରୋପଚାର ସାହାଯ୍ୟରେ ଦୂର କରିପାରୁଥିଲେ । ମସ୍ତିଷ୍କ ଅଭ୍ୟନ୍ତରରେ ମଧ୍ୟ ତ୍ରୁଟ ଅସ୍ତ୍ରୋପଚାର କରି ବହୁବାର କୃତକାର୍ଯ୍ୟ ହୋଇଥିଲେ ।

ମଗଧର ରାଜଧାନୀ ରାଜଗୃହରେ ଜଣେ ଧନୀ ବ୍ୟବସାୟୀ ଏକ ମାରାତ୍ମକ ମସ୍ତିଷ୍କ ରୋଗରେ ଆକ୍ରାନ୍ତ ହୋଇଥିଲେ । ବହୁ ବଡ଼ ବଡ଼ ଚିକିତ୍ସକ ତାଙ୍କୁ ପରୀକ୍ଷା କରି କହିଥିଲେ ଯେ ସେ ଆଉ ଭଲ ହୋଇପାରିବେ ନାହିଁ । ମୃତ୍ୟୁ ତାଙ୍କର ଅନିବାର୍ଯ୍ୟ । ସେ ଆଉ ୫/୬ ଦିନ ଭିତରେ ମରିଯିବେ ବୋଲି କହି ସେମାନେ ତାଙ୍କୁ ଛାଡ଼ି ଯାଇଥିଲେ । ଏହି ସମୟରେ ବ୍ୟବସାୟୀଟି ମହାରାଜା ବିମ୍ବିସାରଙ୍କ ରାଜବୈଦ୍ୟ ଜୀବକଙ୍କ ଅପୂର୍ବ ଖ୍ୟାତି କଥା ଶୁଣିବାକୁ ପାଇଲେ । ସେ ଯାଇ ମହାରାଜା ବିମ୍ବିସାରଙ୍କ ନିକଟରେ ପହଞ୍ଚିଲେ । ବଡ଼ ଅନୁନୟ ବିନୟ କରି ଜୀବକ ତାଙ୍କୁ ପରୀକ୍ଷା କରିବେ ବୋଲି କହିଲେ । ମହାରାଜାଙ୍କ ଠାରୁ ଅନୁମତି ପାଇ ଜୀବକ ତାଙ୍କୁ ପରୀକ୍ଷା କରି ତାଙ୍କ ମସ୍ତିଷ୍କରେ ଅସ୍ତ୍ରୋପଚାର କଲେ । ଫଳରେ ରୋଗୀଟି ଏକୋଇଶ ଦିନ ଭିତରେ ଭଲ ହୋଇଗଲା । ଧନୀ ବ୍ୟବସାୟୀଟି ତାଙ୍କର ସମସ୍ତ ସମ୍ପତ୍ତି ଆଣି ଜୀବକଙ୍କ ପାଦଠାରେ ସମର୍ପି ଦେଲା । ଜୀବକ ତାଙ୍କ ପାଉଣା ବ୍ୟତୀତ ଅଧିକ ନେବେନି ବୋଲି ମନା କରିଦେଲେ । ସେ ବହୁ କାକୁତିମିନତି କରି ତାଙ୍କୁ ଦୁଇଲକ୍ଷ ସ୍ୱର୍ଣ୍ଣମୁଦ୍ରା ନେବାକୁ ବାଧ କଲା । ଜୀବକ ସେଥିରୁ ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ମହାରାଜା ବିମ୍ବିସାରଙ୍କୁ ଦେଇ ବାକି ଅଧକ ନିଜ ପାଇଁ ରଖିଲେ ।

ଆଉ ଦିନେ ଗୋଟିଏ ପୁରୁଷ ରୋଗୀ ତାଙ୍କ ପାଖରେ ଆସି ପହଞ୍ଚିଲା । ତା ପେଟରେ ଅନ୍ତସବୁ ଓଲଟପାଲଟ ହୋଇଯାଇଥିଲା । ଏହା ଫଳରେ ରୋଗୀ କିଛି ହଜମ କରିପାରୁ ନ ଥିଲା କି ଖାଇପାରୁ ନ ଥିଲା । ଏହାଯୋଗୁଁ ସେ ରକ୍ତହୀନ ହୋଇ ହଳଦିଆ ପଡ଼ି ଯାଇଥିଲା । ବହୁ ଚିକିତ୍ସକଙ୍କ ପାଖକୁ ଯାଇ ରୋଗୀଟି ହତାଶ ହୋଇ ଫେରିଆସି ଜୀବକଙ୍କ ଠାରେ ପହଞ୍ଚିଲା । ଜୀବକ ତାକୁ ପରୀକ୍ଷା କରି ରୋଗର କାରଣ ବାହାରକଲେ । ସେ

ଅସ୍ତ୍ରୋପଚାର ସାହାଯ୍ୟରେ ରୋଗୀର ପେଟ ଚିରି ଅନ୍ତଗୁଡ଼ିକୁ ଠିକ୍‌ଭାବରେ ସଜାଡ଼ି ଦେଲେ । ତତ୍‌ପରେ ପେଟକୁ ସିଲାଇ କରି ସେଥିରେ ଏକପ୍ରକାର ମଲମ ଲଗାଇଦେଲେ । କିଛିଦିନ ପରେ ରୋଗୀଟି ଖୁସିହୋଇ ଜୀବକଙ୍କୁ ଷୋଳହଜାର ସ୍ୱର୍ଣ୍ଣମୁଦ୍ରା ଉପହାର ଦେଲା ।

ବିମ୍ବିସାରଙ୍କ ମୃତ୍ୟୁ ପରେ ଜୀବକ ମଧ୍ୟ ତାଙ୍କ ପୁତ୍ର ଅଜାତଶତ୍ରୁଙ୍କ ରାଜବୈଦ୍ୟ ହୋଇଥିଲେ । ଅଜାତଶତ୍ରୁଙ୍କ ରାଜତ୍ୱ କାଳରେ ସମ୍ଭବତଃ ତାଙ୍କ ମୃତ୍ୟୁ ହେଲା । ଜୀବକ ସାରା ଆର୍ଯ୍ୟାବର୍ତ୍ତରେ ଏତେ ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ ଯେ ସେପରି ଭାଗ୍ୟ ଖୁବ୍ କମ୍ ଚିକିତ୍ସକଙ୍କର ଜୁଟିଥିଲା ।

## ଚତୁର୍ଦ୍ଦଶ ଅଧ୍ୟାୟ

# ଗଣିତଜ୍ଞ ବୌଧାୟନ

ବୌଧାୟନ ହେଉଛନ୍ତି ପୁରାତନ ଭାରତର ଶ୍ରେଷ୍ଠତମ ଜ୍ୟାମିତି ବିଦ୍ୟାବିତ୍ । ତାଙ୍କ ଜନ୍ମକାଳ ବିଷୟରେ ଠିକ୍ ଭାବରେ କିଛି ଜଣାଯାଇ ନ ଥିଲେ ହେଁ ସେ ଖ୍ରୀ:ପୂ: ପଞ୍ଚମରୁ ତୃତୀୟ ଶତାବ୍ଦୀ ଭିତରେ ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ ବୋଲି ବହୁ ବିଶେଷଜ୍ଞଙ୍କ ମତ । ତାଙ୍କ ରଚିତ ସୁଲବ ସୂତ୍ର ସେ କାଳର ଏକ ଅଭିନବ ରଚନା । ବୌଧାୟନ ବିଭିନ୍ନ ଜ୍ୟାମିତିକ ଚିତ୍ର ଅଙ୍କନ କରିଥିବାର ପ୍ରମାଣ ମିଳେ । ବିଭିନ୍ନ ତ୍ରିଭୁଜ, ଚତୁର୍ଭୁଜ ଆଦିର ଆକାର, କ୍ଷେତ୍ରଫଳ, ଆୟତନ ଆଦି ମାପିବାର ସୂତ୍ର ସେ ବାହାର କରିଥିଲେ । ବୃତ୍ତର କ୍ଷେତ୍ରଫଳ ବାହାର କରିବା ପାଇଁ ସେ ସୂତ୍ର ଆବିଷ୍କାର କରିଥିଲେ । ଭିନ୍ନ ଭିନ୍ନ ଆୟତକ୍ଷେତ୍ର, ଟ୍ରାପିଜିୟମ, ବର୍ଗକ୍ଷେତ୍ର ଆଦି ଆଙ୍କିବାର ବିଭିନ୍ନ ସୂତ୍ର ସେ ଆବିଷ୍କାର କରି ସେକାଳରେ ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ ।

ଗ୍ରୀକ୍ ବୈଜ୍ଞାନିକ ପିଥାଗୋରାସଙ୍କ ଉପପାଦ୍ୟକୁ ବୌଧାୟନ ସ୍ୱାଧୀନ ଭାବରେ ପ୍ରତିପାଦିତ କରିଥିବାର କେତେକ ପ୍ରମାଣ ମିଳେ । ତାଙ୍କ ସୂତ୍ର ହେଉଛି ଏକ ଆୟତକ୍ଷେତ୍ରର ବାହୁଦ୍ୱୟର ବର୍ଗର ସମଷ୍ଟି ସେହି ଆୟତକ୍ଷେତ୍ରର କର୍ଣ୍ଣର ବର୍ଗ ସହିତ ସମାନ । ବୌଧାୟନଙ୍କ ପୂର୍ବରୁ ଏହି ସୂତ୍ର ଆମ ଦେଶରେ ପ୍ରଚଳିତ ଥିବାର ବହୁ ପ୍ରମାଣ ମିଳେ । ବିଭିନ୍ନ ପ୍ରକାର ହୋମକୁଣ୍ଡ, ପୂଜା ଆସ୍ଥାନ

ଆଦି ତିଆରି କରିବାରେ ଏହି ସୂତ୍ର ବ୍ୟବହୃତ ହେବାର ନାନା ପ୍ରମାଣ ରହିଛି ।

ବୌଧାୟନ ନିଜେ ତାଙ୍କ ରଚିତ ପୁସ୍ତକରେ କହିଛନ୍ତି ଯେ ସେ ଯେଉଁସବୁ ଜ୍ୟାମିତିକ ସୂତ୍ର ବାହାର କରିଥିଲେ, ସେଥିଭିତରୁ ଅନେକ ତାଙ୍କଦ୍ୱାରା ଆବିଷ୍କୃତ ହୋଇଥିଲା । ତାଙ୍କର ବହୁପୂର୍ବରୁ ଏହିସବୁ ସୂତ୍ର ଆମଦେଶରେ ପ୍ରଚଳିତ ଥିଲା । ସେ ସେଗୁଡ଼ିକୁ ସଂଗ୍ରହ ତଥା ଶ୍ରେଣୀକରଣ ଯାହା କରିଛନ୍ତି । ତାଙ୍କ ପୂର୍ବରୁ ରଚିତ ତୈତିରୀୟ ସଂହିତାରୁ ସେ ଅନେକ ସାହାଯ୍ୟ ନେଇଥିବାର ସ୍ୱୀକାର କରିଛନ୍ତି । ପାଶ୍ଚାତ୍ୟ ଜ୍ୟାମିତି ଗ୍ରନ୍ଥକୁ ଇଉକ୍ଳିଡଙ୍କ ଦାନ ଯେମିତି, ଆମ ଦେଶରେ ବୌଧାୟାନଙ୍କ ଦାନ ଠିକ୍ ସେମିତି ।

ବୌଧାୟନ ଯେଉଁ ସମୟରେ ଆମ ଦେଶରେ ବିଭିନ୍ନ ଜ୍ୟାମିତିକ ସୂତ୍ରର ପ୍ରଚାର କରିଥିଲେ, ତାହାର ଠିକ୍ ପାଖାପାଖି ଛାଳରେ ଗ୍ରୀସ୍ ଦେଶରେ ଇଉକ୍ଳିଡ୍, ପିଥାଗୋରାସ୍, ଥେଲସ୍ ଆଦିଙ୍କ ଦ୍ୱାରା ବହୁ ଜ୍ୟାମିତିକ ସୂତ୍ର ଆବିଷ୍କୃତ ହୋଇଥିବାର ପ୍ରମାଣ ମିଳେ । ତେବେ ଗ୍ରୀସ୍ ଦେଶୀୟ ଇଉକ୍ଲୀଡୀୟ ଜ୍ୟାମିତି ଆମ ଭାରତୀୟ ଜ୍ୟାମିତି ସୂତ୍ରକୁ ପ୍ରଭାବିତ କରିଥିବାର କିଛି ପ୍ରମାଣ ମିଳି ନାହିଁ । ଭାରତୀୟ ଜ୍ୟାମିତି ସ୍ୱାଧୀନ ଭାବରେ ଉନ୍ନତି କରିଥିବାର ପ୍ରମାଣ ରହିଛି । ତେବେ ଏହା ଇଉକ୍ଳିଡ୍‌ଙ୍କ ଜ୍ୟାମିତି ଭଳି ସେତେ ଉନ୍ନତ ଓ ସର୍ବବ୍ୟାପୀ ହୋଇପାରି ନାହିଁ । ଏଥିପାଇଁ ଭାରତର ଆଦି ବୈଜ୍ଞାନିକ ଭାବରେ ବୌଧାୟନଙ୍କୁ ସ୍ୱୀକୃତି ଦେବାର ଯଥେଷ୍ଟ କାରଣ ରହିଛି ।

## ପଞ୍ଚଦଶ ଅଧ୍ୟାୟ

# ବୈଦ୍ୟରାଜ ଚରକ

ଭାରତୀୟ ଚିକିତ୍ସା ଶାସ୍ତ୍ରରେ ଚରକଙ୍କ ସ୍ଥାନ ଖୁବ୍ ଉଚ୍ଚରେ । ସେ ଜଣେ ଖାଲି ଉଚ୍ଚକୋଟୀର ଚିକିତ୍ସକ ନ ଥିଲେ, ଚିକିତ୍ସା ବିଜ୍ଞାନରେ ତାଙ୍କ ଲିଖିତ ଗ୍ରନ୍ଥ ଭାରତୀୟ ବିଜ୍ଞାନକୁ ଆନ୍ତର୍ଜାତିକ କ୍ଷେତ୍ରରେ ଖୁବ୍ ଉଚ୍ଚ ସ୍ଥାନରେ ବସାଇ ପାରିଥିଲା । ତାଙ୍କ ରଚିତ 'ଚରକ ସଂହିତା' ଚିକିତ୍ସା ବିଜ୍ଞାନରେ ଏକ ଅମୂଲ୍ୟ ସମ୍ପଦ । ବହୁ ବିଶେଷଜ୍ଞଙ୍କ ମତରେ ଚରକ ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ଭାରତର ସୁବିଖ୍ୟାତ ବ୍ୟାକରଣ ବିଶେଷଜ୍ଞ ପାଣିନିଙ୍କ ବହୁ ପୂର୍ବରୁ ଚରକ ଖ୍ୟାତି ଲଭିଥିବାର ପ୍ରମାଣ ରହିଛି । କାରଣ ପାଣିନିଙ୍କ ରଚନାରେ ଚରକଙ୍କ ନାମ ଉଲ୍ଲେଖ ଅଛି । ଆଉ କେତେକଙ୍କ ମତରେ ମହର୍ଷି ପତଞ୍ଜଳୀଙ୍କ ଅନ୍ୟନାମ ଚରକ । ଏହି ପତଞ୍ଜଳୀ ଯୋଗ ଉପରେ ଗବେଷଣା କରି ଗ୍ରନ୍ଥମାନ ଲେଖିଯାଇ ଅଛନ୍ତି । କିନ୍ତୁ ଅନ୍ୟକେତେକେ ଏହାକୁ ସ୍ୱୀକାର କରନ୍ତି ନାହିଁ । ତେବେ ପତଞ୍ଜଳୀ ଚରକଙ୍କ ଗ୍ରନ୍ଥ ଉପରେ ସମାଲୋଚନା ଲେଖିଛନ୍ତି । ପତଞ୍ଜଳୀ ଖ୍ରୀ:ପୂ: ୧୭୫ ମସିହାରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ତେଣୁ ଚରକ ନିଶ୍ଚୟ ତହିଁ ପୂର୍ବରୁ ଖ୍ୟାତି ଲଭିଥିବା ସ୍ୱାଭାବିକ । ତେବେ ଚରକ ନାମଧେୟ ବହୁ ଚିକିତ୍ସକ ବିଭିନ୍ନ ଯୁଗରେ ଥିବାରୁ ପ୍ରକୃତ ଚରକଙ୍କ କାଳ ନିରୂପଣ କଷ୍ଟସାଧ୍ୟ ।

ତେବେ ମୂଳ ଚରକ ଯେ ଖ୍ରୀଷ୍ଟ ଜନ୍ମ ହେବାର ବହୁ ପୂର୍ବରୁ ଥିଲେ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଆଉ କେତେକଙ୍କ ମତରେ ଚରକସଂହିତାକୁ ଆତ୍ରେୟଙ୍କ ଶିଷ୍ୟ ଅଗ୍ନିବେଶ ରଚନା କରିଛନ୍ତି । ଆମେ ବର୍ତ୍ତମାନ ଯେଉଁ ଚରକସଂହିତା ଦେଖୁଛୁଁ, ତାହା ପରବର୍ତ୍ତୀ କାଳର ଲେଖା । ପ୍ରକୃତ ଚରକସଂହିତା ଏହାଠାରୁ ଢେର୍ ପୃଥକ୍ ।

ଚରକସଂହିତାରେ ରୋଗାଦି ଚିକିତ୍ସା ସଂପର୍କରେ ବିଶଦ ଭାବରେ ବର୍ଣ୍ଣିତ ହୋଇଅଛି । ଚିକିତ୍ସାବିଜ୍ଞାନର ଛାତ୍ରମାନେ କେମିତି ବଞ୍ଚାଯିବେ ଓ କେମିତି ଶିକ୍ଷାପାଇବେ, ଚିକିତ୍ସାବିଜ୍ଞାନୀମାନଙ୍କର ଧର୍ମ କଅଣ, ସେ ବିଷୟରେ ଚରକସଂହିତାରେ ବିଶେଷ ଭାବରେ ବର୍ଣ୍ଣନା ଅଛି । 'ହିପୋକ୍ରେଟାସ୍ ଦ୍ୱାହି' ଯେପରି ପାଶ୍ଚାତ୍ୟ ଚିକିତ୍ସା ବିଜ୍ଞାନରେ ଅନୁଗୃହୀତ 'ଚରକଙ୍କ ଦ୍ୱାହି' ସେଭଳି ଆମ ଚିକିତ୍ସାବିଜ୍ଞାନରେ ଅନୁଗୃହୀତ । ଚିକିତ୍ସକମାନଙ୍କ ସ୍ୱଭାବ, ଚରିତ୍ର, ପୋଷାକ, ପରିଚ୍ଛଦ କେମିତି ହେବା ଉଚିତ ସେ ସଂପର୍କରେ ବିଶଦ ନିର୍ଦ୍ଦେଶ ରହିଛି । ମଣିଷ ଶରୀର ଗଠନ, ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ କିଭଳି ପରିଚାଳିତ ହୁଅନ୍ତି, ଜରାୟୁରେ ଶିଶୁ କିଭଳି ବୃଦ୍ଧିପ୍ରାପ୍ତ ହୁଏ, ଏ ସଂପର୍କରେ ଚରକ ବିଶଦ ଭାବରେ ଆଲୋଚନା କରିଛନ୍ତି । ବିଭିନ୍ନ ରୋଗର ଶ୍ରେଣୀବିଭାଗ, ରୋଗଚିହ୍ନିବାର ପ୍ରଣାଳୀ, ରୋଗର ଚିକିତ୍ସା, ରୋଗ ପ୍ରତିଷେଧକ ଉପରେ ଚରକଙ୍କ ନିର୍ଦ୍ଦେଶ ଓ ପରାମର୍ଶ ଅତି ଉଚ୍ଚକୋଟୀର । ମା' ପେଟ ଭିତରେ ଶିଶୁ ବିଭିନ୍ନ ମାସରେ କେଉଁ କେଉଁ ଆକାରରେ ଥାଏ, ସେ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଛନ୍ତି । ପ୍ରସବ ପୂର୍ବରୁ ମା' ପେଟର ପିଲା ପୁଅ ହେବ କି ଝିଅ ହେବ, ଚରକ ସେ ସଂପର୍କରେ ଜାଣିବା ପାଇଁ ନାନା ଉପାୟ ବତେଇଛନ୍ତି ।

ମଣିଷ କଙ୍କାଳରେ କେତେଗୋଟି ହାଡ଼ ଅଛି ସେ ସବୁ ଠିକ ଭାବରେ ନିର୍ଣ୍ଣୟ କରିଛନ୍ତି । ମାଂସପେଶୀର ଗଠନ, କାର୍ଯ୍ୟ ସମ୍ବନ୍ଧରେ ତାଙ୍କ ବର୍ଣ୍ଣନା ଖୁବ୍ ପ୍ରାଞ୍ଜଳ । ମଣିଷର ହୃତ୍‌ପିଣ୍ଡ କିଭଳି ଫମ୍ପା ଓ ତାହା ରକ୍ତ ସଞ୍ଚାଳନରେ କି ଭୂମିକା ନିଏ, ସେ ତାହା ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି ।

ବିଭିନ୍ନ ରୋଗର କାରଣ ସଂପର୍କରେ ଚରକ ଯେଉଁ ମତ ଦେଇଛନ୍ତି, ତାହା ଆଧୁନିକ ବୈଜ୍ଞାନିକ ମତ ଠାରୁ ଯଥେଷ୍ଟ ଅଲଗା । ବାତ, ପିତ୍ତ, କଫର ଅସମତୁଲତା ରୋଗର କାରଣ ବୋଲି ତାଙ୍କ ମତ । କିନ୍ତୁ ଆଧୁନିକ ବିଜ୍ଞାନ ତା'ଠାରୁ ଅଲଗା ମତ ପୋଷଣ କରେ । କ୍ଷୁଦ୍ରାତିକ୍ଷୁଦ୍ର ଜୀବାଣୁ ରୋଗର କାରଣ ବୋଲି ଧାରଣା ସେ ସମୟରେ ଦେଖାଦେଇ ନ ଥିଲା । ତେବେ ରୋଗ ନିର୍ଣ୍ଣୟକାରୀ ଲକ୍ଷଣ ସଂପର୍କରେ ତାଙ୍କ ନିର୍ଦ୍ଦେଶ ଖୁବ୍ ସ୍ପଷ୍ଟ ।

ରୋଗ ଦୂରୀକରଣ ପାଇଁ ଔଷଧଭାବରେ ବିଭିନ୍ନ ଉଦ୍ଭିଦ ଓ ପ୍ରାଣିଜ ପଦାର୍ଥ ସହ ଧାତୁଜାତ ପଦାର୍ଥ ବ୍ୟବହାର ଚରକ ସଂହିତାରେ ବର୍ଣ୍ଣିତ ଅଛି । ଏହିସବୁ ଔଷଧ ଗୁଣ୍ଡ, ବଟିକା ମଲମ ଭାବରେ ଦିଆଯିବା କଥା ତାଙ୍କ ସଂହିତାରେ ଆଲୋଚନା କରାଯାଇଅଛି ।

ଚରକସଂହିତା ଏକ ବିରାଟ ଗ୍ରନ୍ଥ । ଏହି ଗ୍ରନ୍ଥରୁ ଜଣାପଡ଼େ ଭାରତୀୟମାନଙ୍କର ଚିକିତ୍ସା ବିଜ୍ଞାନରେ ଅଗାଧ ପାଣ୍ଡିତ୍ୟ ଥିଲା । ଆଧୁନିକ ପାଶ୍ଚାତ୍ୟ ଚିକିତ୍ସାବିଜ୍ଞାନ ସହିତ ତାଳ ଦେଇ ଚାଲିଲାଭଳି ଜ୍ଞାନ ଚରକ ସଂହିତାରେ ଅଛି । ତା' ନ ହୋଇଥିଲେ ପାଶ୍ଚାତ୍ୟ ଚିକିତ୍ସାବିଜ୍ଞାନ ସହିତ ତାଳଦେଇ ଆମ ଆୟୁର୍ବେଦ ଆଜିପର୍ଯ୍ୟନ୍ତ ଚାଲିପାରି ନ ଥାନ୍ତା ।

### ଷୋଡ଼ଶ ଅଧ୍ୟାୟ

# ସୁବିଖ୍ୟାତ ଅସ୍ତ୍ରୋପଚାରକ ଶୁଶ୍ରୁତ

ଅନେକଙ୍କର ଭ୍ରମଧାରଣା ଅଛି ଯେ ଆମ ଭାରତୀୟ ଆୟୁର୍ବେଦରେ ଅସ୍ତ୍ରୋପଚାର ବା ଅପରେସନ କଥା ନାହିଁ । ଏଲୋପାଥିରେ ଯେମିତି ଅସ୍ତ୍ରୋପଚାର ଏକ ନିବିଡ଼ତମ ଅଙ୍ଗ, କବିରାଜୀରେ ମଧ ସେହିଭଳି ଅସ୍ତ୍ରୋପଚାର ଏକ ପ୍ରଧାନ ଅଙ୍ଗ ଭାବରେ ବିବେଚିତ ହୁଏ । ପୃଥିବୀରେ ଆଜିପର୍ଯ୍ୟନ୍ତ ଯେତେ ବଡ଼ ବଡ଼ ସର୍ଜ୍ଜନ ଦେଖାଦେଲେଣି, ସେମାନଙ୍କ ଭିତରେ ଭାରତୀୟ ସର୍ଜ୍ଜନ ଶୁଶ୍ରୁତ ଯେ ଏକ ଉଚ୍ଚ ଆସନ ଅଧିକାର କରିଥିଲେ ଏଥିରେ ଦ୍ୱିଧା କରିବାରେ କିଛି ନାହିଁ । ଶୁଶ୍ରୁତ ତାଙ୍କ ରଚିତ ଶୁଶ୍ରୁତ ଶଲ୍ୟତନ୍ତ୍ର ଗ୍ରନ୍ଥର ପ୍ରଣେତା ପାଇଁ ଯେତିକି ପ୍ରସିଦ୍ଧ, ଅସ୍ତ୍ରୋପଚାରରେ ନିଜର ସୁନିପୁଣ ଦକ୍ଷତା ପାଇଁ ତା'ଠାରୁ ଅଧିକ ପ୍ରସିଦ୍ଧ । ଶୁଶ୍ରୁତ ଠିକ୍ କେଉଁ ସମୟରେ ପ୍ରସିଦ୍ଧି ଲଭିଥିଲେ, ସେ ସମ୍ବନ୍ଧରେ ସେମିତି କିଛି ନିଶ୍ଚିତତା ନାହିଁ । ତାଙ୍କ ବଂଶପରମ୍ପରା ସମ୍ବନ୍ଧରେ ସେମିତି କିଛି ଠିକ୍ ବିବରଣୀ ମିଳେ ନାହିଁ । ବହୁ ବିଶେଷଜ୍ଞଙ୍କ ମତରେ ଶୁଶ୍ରୁତ ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀରେ ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ । ସେ କାହାର ସନ୍ତାନ, ତାଙ୍କ ବାପା ମା କିଏ ଜଣାଯାଇ ନ ଥିଲେ ହେଁ ସେ ମହର୍ଷି ବିଶ୍ୱାମିତ୍ରଙ୍କ ବଂଶଧର ବୋଲି କେତେକେ କହନ୍ତି । ସେ ବୈଦିକ ଯୁଗରେ ପ୍ରସିଦ୍ଧି ଅର୍ଜ୍ଜନ କରିଥିବା କଥା ଜଣାଅଛି । ଆମେ ଆଜିକାଲି ଯେଉଁ ଶୁଶ୍ରୁତ ସଂହିତା ଦେଖୁଛୁଁ, ଏହା ଚରକ ସଂହିତା ଭଳି ଏକ ମୂଲ୍ୟବାନ ଗ୍ରନ୍ଥ

ହୋଇଥିଲେ ହେଁ ଏହା ଖ୍ରୀ:ପୂ: ଚତୁର୍ଥ ଶତକରେ ନାଗାର୍ଜ୍ଜୁନଙ୍କ ଦ୍ୱାରା ସଂପାଦିତ ହୋଇଥିଲା । ଏହି ନାଗାର୍ଜ୍ଜୁନ ଜଣେ ବିଶିଷ୍ଟ ଅସ୍ତ୍ରୋପଚାରକ, ପୁରାତନ ଭାରତର ରସାୟନବିଦ୍ ନୁହନ୍ତି । ରସାୟନବିଦ୍ ନାଗାର୍ଜ୍ଜୁନ, ପରବର୍ତ୍ତୀ କାଳର, ସେ ନାଳନ୍ଦା ବିଶ୍ୱବିଦ୍ୟାଳୟରେ ରସାୟନ ଅଧାପକ ଥିଲେ ।

ଶୁଶ୍ରୁତଙ୍କ ପୂର୍ବରୁ ଭାରତରେ ଅସ୍ତ୍ରୋପଚାର ବିଜ୍ଞାନ ଖୁବ୍ ଉଚ୍ଚକୁ ଉଠିବା ସଂଗେ ସଂଗେ ଏହା ସମସାମୟିକ ମିଶର, ଗ୍ରୀକ୍, ମେସୋପଟେମିଆ ରାଜ୍ୟରେ ହେଉଥିବା ଅସ୍ତ୍ରୋପଚାର ଠାରୁ ଢେର ଉନ୍ନତ ଥିଲା । ଭାରତରେ ସେ କାଳରେ ଗୋଡ଼ହାତ କଟିଯାଉଥିଲେ ଲୁହାରୁ ନିର୍ମିତ କୃତ୍ରିମ ଗୋଡ଼ହାତ ଲଗାଯାଇପାରୁଥିଲା । ଯୁଦ୍ଧରେ ସୈନ୍ୟମାନଙ୍କ ଦେହରେ ଶରବିଦ୍ଧ ହେଉଥିଲେ ଅସ୍ତ୍ରୋପଚାର ବିଶାରଦମାନେ ଦେହରୁ ଶର କାଢ଼ି କ୍ଷତସ୍ଥାନକୁ ଭଲ କରିପାରୁଥିଲେ । ବଡ଼ ଆଶ୍ଚର୍ଯ୍ୟର କଥା ଅସ୍ତ୍ରୋପଚାରକମାନେ ଏତେ କାମ କରି ସୁଦ୍ଧା କବିରାଜଙ୍କ ଭଳି ସମାଜରେ ଉଚ୍ଚ ଆସନ ପାଉ ନ ଥିଲେ । କିନ୍ତୁ ଶୁଶ୍ରୁତଙ୍କ ସମୟରେ ଏହି ଅସ୍ତ୍ରୋପଚାର ବିଦ୍ୟା ଖୁବ୍ ଉଚ୍ଚକୁ ଉଠିବା ସଙ୍ଗେ ସଙ୍ଗେ ଅସ୍ତ୍ରୋପଚାରକମାନେ ସମାଜରେ ଉଚ୍ଚ ଆସନ ଲାଭ କରିଥିବାର ପ୍ରମାଣ ମିଳେ ।

ଶୁଶ୍ରୁତ ଅସ୍ତ୍ରୋପଚାର ସମ୍ବନ୍ଧରେ ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିଲେ । ଅସ୍ତ୍ରୋପଚାର ବିଜ୍ଞାନରେ ସେ କେତେ ଯେ ଉନ୍ନତି କରିଥିଲେ ତହିଁର ଏକ ସୁବିସ୍ତୃତ ବିବରଣୀ ଦେବା ସହଜ ନୁହେଁ । ସେ ଅସ୍ତ୍ରୋପଚାର ପାଇଁ କେତେ ନୂଆ ନୂଆ ଅସ୍ତ୍ରୋପଚାର ଯନ୍ତ୍ରପାତି ପ୍ରଚଳନ କରାଇଥିଲେ । ପ୍ରକୃତ ଅସ୍ତ୍ରୋପଚାର କରିବା ପୂର୍ବରୁ ତାଙ୍କ ଶିଷ୍ୟମାନେ ବିଭିନ୍ନ ପ୍ରକାର ଛୁରୀ, କଇଁଚି ଆଦି କେମିତି ଚଳାଇବାକୁ ହୁଏ, ନାନା କୃତ୍ରିମ ପଦାର୍ଥ ଦେହରେ ଚଳାଇ ଅଭ୍ୟାସ କରୁଥିଲେ ।

ନାନା ପ୍ରକାର ପନିପରିବା, ମୃତପ୍ରାଣୀ ଦେହରେ ସେମାନେ ସେଗୁଡ଼ିକୁ ଚଳାଇ ଅସ୍ତ୍ରୋପଚାର ସମ୍ବନ୍ଧରେ ନାନା ଗୂଢ଼ତତ୍ତ୍ୱ ଶିକ୍ଷା କରୁଥିଲେ । ସେ ସମୟରେ ଛାତ୍ରମାନେ ମଲାମଣିଷ ଦେହକୁ କାଟି ଶରୀର ଅଭ୍ୟନ୍ତରର ବହୁ ଅଂଶ ସ୍ୱଚକ୍ଷୁରେ ଦେଖି ସେଥିରୁ ନାନା କଥା ଶିକ୍ଷା କରୁଥିଲେ । ଶୁଶ୍ରୁତ ତାଙ୍କ ପିଲାମାନଙ୍କୁ ତାତ୍ତ୍ୱିକ ତଥା ପ୍ରାୟୋଗିକ ବିଜ୍ଞାନର ଶିକ୍ଷା ଦେଉଥିଲେ । ସେ କହୁଥିଲେ, ଚିକିତ୍ସା ବିଜ୍ଞାନର ଛାତ୍ରମାନେ ଯଦି ବ୍ୟାବହାରିକ ବିଜ୍ଞାନରେ ଶିକ୍ଷା ନ ପାନ୍ତି, ତେବେ ସେମାନଙ୍କ ଶିକ୍ଷା ପ୍ରକୃତରେ ଶିକ୍ଷା ନୁହେଁ ।

ଶୁଶ୍ରୁତ ନିଜେ ଏକ ଅତି ଉଚ୍ଚକୋଟୀର ଅସ୍ତ୍ରୋପଚାରକ ଥିଲେ । ସେ ସବୁ ପ୍ରକାର ଅସ୍ତ୍ରୋପଚାରରେ ବେଶ୍ ଦକ୍ଷତା ହାସଲ କରିଥିଲେ । ଗୋଡ଼ହାତ ଭାଙ୍ଗିଗଲେ ବା ଖସିଗଲେ; ଅର୍ଶ, ଭଗନ୍ଦର, ହାର୍ନିଆ ଆଦି ରୋଗ ହେଲେ ସେ ଅସ୍ତ୍ରୋପଚାର କରି ଭଲ କରିଦେଉଥିଲେ । ଗର୍ଭବତୀ ସ୍ତ୍ରୀମାନଙ୍କର ପିଲା ପ୍ରସବ ହେଉ ନ ଥିଲେ ସେ ଅସ୍ତ୍ରୋପଚାର କରି ପିଲାକୁ ମା’ ପେଟରୁ ବାହାର କରି ଦେଉଥିଲେ । କଥିତ ଅଛି, ଖ୍ରୀ: ପୂ: ପ୍ରଥମ ଶତାବ୍ଦୀରେ ରୋମ୍‌ରେ ରୋମଶାସକ ଜୁଲିୟସ ସିଜର ତାଙ୍କ ମା’ ପେଟରୁ ଠିକ୍ ସେହି ଉପାୟରେ ବାହାର ହୋଇଥିବାରୁ ଏ ଧରଣର ଅସ୍ତ୍ରୋପଚାର ଆଜିକାଲି ସିଜେରିଏନ ଅସ୍ତ୍ରୋପଚାର ଭାବରେ ଖ୍ୟାତ । ସିଜରଙ୍କ ବହୁ ପୂର୍ବରୁ ଶୁଶ୍ରୁତ ସେହିଭଳି ଅସ୍ତ୍ରୋପଚାର ଆମ ଦେଶରେ ବ୍ୟାପକ ଭାବରେ କରି ତାଙ୍କ ଅମଳରେ ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ । ଆଖିରେ ପରଳ ପଡ଼ିଥିଲେ ଶୁଶ୍ରୁତ ଆଧୁନିକ ଅସ୍ତ୍ରୋପଚାର ଭଳି ଅସ୍ତ୍ରୋପଚାର କରି ପରଳ ବାହାର କରି ପାରୁଥିଲେ । ବୃକ୍କରେ ବା ପରିସ୍ରାନଳୀରେ ପଥର ଜମିଥିଲେ ସେ ଅପରେସନ ଦ୍ୱାରା ପଥର ବାହାର କରିପାରୁଥିଲେ ।

ଶୁଶ୍ରୁତ ଗୁଡ଼ିଏ ଅସ୍ତ୍ରୋପଚାର ଯନ୍ତ୍ରପାତିର ଉଦ୍ଭାବନ ତଥା ପ୍ରଚଳନ କରାଇଥିଲେ । ସେ ଯନ୍ତ୍ରପାତିଗୁଡ଼ିକୁ ପ୍ରଧାନତଃ ଦୁଇଭାଗରେ ବିଭକ୍ତ କରିଥିଲେ, ଯଥା – ଦାନ୍ତୁଆ ଓ ଅଦାନ୍ତୁଆ । ଅଦାନ୍ତୁଆ ଯନ୍ତ୍ରପାତି ପୁଣି ଶହେଏକ ପ୍ରକାରର । ଦାନ୍ତୁଆ ଯନ୍ତ୍ରପାତି କୋଡ଼ିଏ ପ୍ରକାରର । ଏହି ଯନ୍ତ୍ରପାତିଗୁଡ଼ିକ ଖୁବ୍ ଉନ୍ନତଧରଣର ଲୌହରୁ ପ୍ରସ୍ତୁତ ହେବା ଉଚିତ ବୋଲି ସେ ଜୋର ଦେଉଥିଲେ । ଏଗୁଡ଼ିକ ଆକାରରେ ଅତି ବଡ଼ ହେବା ମଧ୍ୟ ଉଚିତ ନୁହେଁ ବୋଲି ସେ କହୁଥିଲେ । ଅସ୍ତ୍ରୋପଚାରକମାନେ ଏହି ଯନ୍ତ୍ରପାତିଗୁଡ଼ିକୁ ଯେମିତି ଦୃଢ଼ ଭାବରେ ଧରିପାରନ୍ତି, ସେଥିପ୍ରତି ଦୃଷ୍ଟି ଦିଆଯିବା ଦରକାର । ଯନ୍ତ୍ରପାତିଗୁଡ଼ିକ ଭୟ ଉଦ୍ରେକକାରୀ ଆକାରର ହେବା ଉଚିତ ନୁହେଁ । ଅପରେସନ ପରେ ପଟି ବାନ୍ଧିବା ପାଇଁ ସେ ପନ୍ଦର ପ୍ରକାର ଅଲଗା ଅଲଗା ପଟିବନ୍ଧା ତାଙ୍କ ସଂହିତାରେ ବର୍ଣ୍ଣନା କରିଛନ୍ତି । ବିଭିନ୍ନ ପ୍ରକାର କ୍ଷାର, ଦାହକ, ଧମନୀ ଓ ଶିରା ଆଦି ବିଷୟରେ ସେ ପ୍ରାଜ୍ଞ ଥିଲେ ଓ ସେଗୁଡ଼ିକର ବ୍ୟବହାର ସେ ଭଲ ଭାବରେ କରୁଥିଲେ ।

ଶୁଶ୍ରୁତ ତାଙ୍କର ଅସ୍ତ୍ରୋପଚାର ସମ୍ବନ୍ଧରେ ଅଲୌକିକ ଜ୍ଞାନ ହେତୁ ସର୍ବତ୍ର ସମ୍ମାନିତ ହେଉଥିଲେ । ତାଙ୍କଠାରେ ଅଧ୍ୟୟନ ପାଇଁ ଛାତ୍ରମାନଙ୍କ ପ୍ରବଳ ଭିଡ଼ ହେଉଥିଲା । ଶୁଶ୍ରୁତଙ୍କ ସମୟରେ ଭାରତ ବର୍ଷରେ ଅସ୍ତ୍ରୋପଚାର ବିଦ୍ୟା ଯେଉଁ ଉର୍ଦ୍ଧ୍ୱକୁ ଉଠିଥିଲା ସମସାମୟିକ ଗ୍ରୀକ୍ ବା ମିଶର ବା ମେସୋପଟେମିଆ ସଭ୍ୟତାରେ ତା'ର ଏକ ଶତାଂଶ ବି ନ ଥିଲା ଓ ଶୁଶ୍ରୁତଙ୍କ ପରେ ମଧ୍ୟ ବହୁ ଶତାବ୍ଦୀ ପର୍ଯ୍ୟନ୍ତ ଏହାର ଉଚ୍ଚ ସ୍ଥାନ ବଜାୟ ରହିପାରିଥିଲା ।

ଶୁଶ୍ରୁତ ଅସ୍ତ୍ରୋପଚାର ବ୍ୟତୀତ ତାଙ୍କ ସଂହିତାରେ ବିଭିନ୍ନ ଋତୁର ମଣିଷ ଶରୀର ଉପରେ ପ୍ରଭାବ କଥା ସୂଚାଇଛନ୍ତି । ବିଭିନ୍ନ ଜାତିର

ଜଳ, ପନିପରିବା, ଫଳମୂଳର ପ୍ରଭାବ ମଣିଷ ଶରୀର ଉପରେ କେମିତି, ସେ ତାହା ପ୍ରାଞ୍ଜଳ ଭାବରେ ତାଙ୍କ ଗ୍ରନ୍ଥରେ ସୂଚାଇଛନ୍ତି । ସେ ଜୀବଜଗତର ମଧ୍ୟ ଶ୍ରେଣୀବିଭାଗ ଓ ବର୍ଗୀକରଣ କରିଥିଲେ । ସୂକ୍ଷ୍ମାତିସୂକ୍ଷ୍ମ କୀଟାଣୁମାନଙ୍କର ପ୍ରଭାବ କଥା ସେ ମଧ୍ୟ ବର୍ଣ୍ଣନା କରିଯାଇଛନ୍ତି । ବିଷାକ୍ତ ଓ ବିଷଶୂନ୍ୟ ଉଦ୍ଭିଦ ଓ ଫଳ, ଔଷଧି ଗଛ ଓ ମୂଳ, କ୍ଷାର ଓ ଧାତୁର ଗୁଣାଗୁଣ ସମ୍ବନ୍ଧରେ ତାଙ୍କ ଗ୍ରନ୍ଥରେ ବିଶଦ ବର୍ଣ୍ଣନା ଦେଖିବାକୁ ମିଳେ ।

ଶୁଶ୍ରୁତଙ୍କ ଦ୍ୱାରା ପ୍ରାଣୀ ଓ ଉଦ୍ଭିଦ ଶ୍ରେଣୀକରଣ ଅନେକାଂଶରେ ଆଧୁନିକ ବୈଜ୍ଞାନିକ ପଦ୍ଧତି ସହ ମିଳିଯାଉଛି । ପ୍ରାଣୀମାନଙ୍କୁ ସେ ସ୍ତନ୍ୟପାୟୀ, ଅଣ୍ଡଜ, କ୍ଷିତିଜ ଓ ଜଳଜ ଭାଗରେ ବିଭକ୍ତ କରିଛନ୍ତି । ପ୍ରଥମ ଭାଗରେ ମଣିଷ, ଗାଈ, ଗୋରୁ, ଛେଳି, ମେଣ୍ଢା ଆଦି ଅନ୍ତର୍ଗତ । ଦ୍ୱିତୀୟ ଭାଗରେ ପକ୍ଷୀ, ଝିଟିପିଟି ଆଦି ଅନ୍ତର୍ଗତ । ତୃତୀୟ ଭାଗରେ ବେଙ୍ଗ ଅନ୍ତର୍ଗତ ଓ ଚତୁର୍ଥ ଭାଗରେ ମାଛ, କ୍ଷୁଦ୍ରାତିକ୍ଷୁଦ୍ର କୀଟ ପତଙ୍ଗ ଆଦି ଅନ୍ତର୍ଗତ । ସେହିଭଳି ସେ ଉଦ୍ଭିଦ ଜଗତକୁ ସପୁଷ୍ପକ, ସଫଳତା, ଲତା ଓ ତୃଣ, ପରିଶେଷରେ ଔଷଧ ଗଛ ଆଦିକୁ ଚାରିଭାଗରେ ବିଭକ୍ତ କରିଛନ୍ତି । ଶୁଶ୍ରୁତ ମଧ୍ୟ ପ୍ରଚାର କରିଥିଲେ, ଭୂମିର ପ୍ରକୃତି ଅନୁଯାୟୀ ଉଦ୍ଭିଦ ନାଳ ପ୍ରଭୃତି ଭୂମିରୁ ଆହରଣ କରିଥାଏ । ସେଥିପାଇଁ ଔଷଧି ଗଛ କେଉଁ ପ୍ରକାର ଭୂମିରେ ଭଲ ହେବ ସେ ମଧ୍ୟ ବର୍ଣ୍ଣନା କରିଯାଇଛନ୍ତି । କ୍ଷାର ବା ଦାହକ ପ୍ରସ୍ତୁତି ପାଇଁ ସେ ନାନା ପ୍ରକାର ଉପାୟ ଓ ପଦ୍ଧତି ତାଙ୍କ ଗ୍ରନ୍ଥରେ ଆଲୋଚନା କରିଛନ୍ତି । ଏଗୁଡ଼ିକର ବିଭିନ୍ନ ବ୍ୟବହାର ସମ୍ବନ୍ଧରେ ସେ ନାନା ପ୍ରକାର ସିଦ୍ଧାନ୍ତ ଦେଇଛନ୍ତି । ବିଭିନ୍ନ ଧାତୁମଧ୍ୟରେ ସୁନା, ତମ୍ବା, କଂସା, ଦସ୍ତା, ସୀସା, ରୁପା ଅଦି ଧାତୁର ଔଷଧି ଗୁଣ ତାଙ୍କୁ ଜଣାଥିଲା ଓ କେଉଁ କେଉଁ ରୋଗରେ କି କି

ଅବସ୍ଥାରେ ରୋଗ ନିରାକରଣ ପାଇଁ ସେଗୁଡ଼ିକ ବ୍ୟବହୃତ ହୋଇପାରିବ, ସେ ତାଙ୍କ ଗ୍ରନ୍ଥରେ ଆଲୋଚନା କରିଛନ୍ତି । ଏତଦ୍‌ବ୍ୟତୀତ ହୀରା, ନୀଳା, ମୋତି, ମାଣିକ୍ୟ, ପ୍ରବାଳ ଆଦିର ଔଷଧି ପ୍ରକୃତି ସମ୍ବନ୍ଧରେ ସେ ବେଶ୍ ସଜାଗ ଥିଲେ ।

ଶୁଶ୍ରୁତ ସଂହିତା ଖ୍ରୀଷ୍ଟାବ୍ଦ ଅଷ୍ଟମ ଶତାବ୍ଦୀରେ ଆରବୀୟ ଭାଷାକୁ ଅନୂଦିତ ହୋଇଥିଲା । ଏହି ଶାସ୍ତ୍ରର ବହୁଜ୍ଞାନ ଗ୍ରୀକ୍, ରୋମାନ ଭାଷାକୁ ଏହାର ପୂର୍ବରୁ ଆଜକୁ ହଜାର ହଜାର ବର୍ଷ ତଳେ ରୂପାନ୍ତରିତ ହୋଇଥିଲା । ସେ ଯୁଗରେ ସାରା ପୃଥିବୀରେ ଏହି ଗ୍ରନ୍ଥ ଥିଲା ଅସ୍ତ୍ରୋପଚାର ବିଦ୍ୟାରେ ସର୍ବଶ୍ରେଷ୍ଠ ପୁସ୍ତକ । ଏହି ସର୍ବଶ୍ରେଷ୍ଠତା ସେହିଦିନଠାରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ବଜାୟ ରହି ଆସିଛି ।

ସପ୍ତଦଶ ଅଧ୍ୟାୟ

# ବିଶିଷ୍ଟ ପରମାଣୁବିତ୍ କଣାଦ

କଣାଦ ମହର୍ଷି ଉଲୁକଙ୍କ ପୁତ୍ର ଥିଲେ । ସେ ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀରେ ଭାରତରେ ପ୍ରସିଦ୍ଧି ଅର୍ଜନ କରିଥିଲେ । କଣାଦଙ୍କ ଅନ୍ୟ ନାମ ହେଉଛି ଆଉଲୁକ୍ୟ ଓ କାଶ୍ୟପ । ସେ ପ୍ରଭାସ ତୀର୍ଥ ବା ଆଜିକାଲିର ପ୍ରୟାଗରେ ଜନ୍ମଗ୍ରହଣ କରିଥିଲେ । ସେ ମହର୍ଷି ସୋମଶର୍ମାଙ୍କ ଶିଷ୍ୟ ଥିଲେ । କଣାଦ ଅତି ସରଳ ଜୀବନଯାପନ କରୁଥିଲେ । ରାସ୍ତାରେ ପଡ଼ିଥିବା ଗହମ ଗୋଟାଇ ସେଥିରୁ ରୁଟି ତିଆରି କରି ସେ ଖାଉଥିଲେ । ସେଥିପାଇଁ ତାଙ୍କ ନାମ ସମ୍ଭବତଃ କଣାଦ ହୋଇଛି । କଣାଦ ଶବ୍ଦଟି କଣଭୁକ ବା କଣଭକ୍ଷରୁ ଜାତ, ଯାହାର ଅର୍ଥ ହେଉଛି ଯେ କଣିକା ଖାଇ ଜୀବନ ଧାରଣ କରେ । ସେ ବୈଶେଷିକ ଦର୍ଶନର ପ୍ରତିଷ୍ଠାତା, ଯେଉଁ ଦର୍ଶନର ଉଦ୍ଦେଶ୍ୟ ହେଉଛି ବିଶ୍ୱକୁ ଠିକ୍ ରୂପେ ଉପଲବ୍ଧ କରି ଆତ୍ମାର ମୁକ୍ତିଲାଭ ଦିଗରେ ପଥ ଦେଖାଇବା ।

ସେ ବିଶ୍ୱର ଗଠନ ସଂପର୍କରେ ଚିନ୍ତା କରି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ ପ୍ରତ୍ୟେକ ବସ୍ତୁର ଅନ୍ତିମ ପରିଣତି ହେଉଛି ପରମାଣୁ । ଏହି କ୍ଷୁଦ୍ରାତିକ୍ଷୁଦ୍ର ପରମାଣୁ ସଂଯୋଗରେ ବସ୍ତୁର ସୃଷ୍ଟି ଓ ଏହି ବସ୍ତୁ ଦ୍ୱାରା ହିଁ ବିଶ୍ୱ ସୃଷ୍ଟି ହୋଇଛି । ବସ୍ତୁକୁ ଭାଗ ଭାଗ କଲେ ମଣିଷ ଏଭଳି ଏକ କ୍ଷୁଦ୍ର କଣିକାଠାରେ ଆସି ପହଞ୍ଚେ, ଯାହାକୁ ଆଉ ଭାଗ ଭାଗ କରିବା ସମ୍ଭବପର ହୁଏ ନାହିଁ । ସେହି

କ୍ଷୁଦ୍ରତମ କଣିକା ହେଉଛି ପରମାଣୁ । ଏହି ପରମାଣୁ ଏତେ କ୍ଷୁଦ୍ର ଯେ ତାକୁ ଖାଲି ଆଖିରେ ଦେଖିହୁଏ ନାହିଁ । ସେଗୁଡ଼ିକ ମଧ୍ୟ ମୁକ୍ତାବସ୍ଥାରେ ରହିପାରନ୍ତି ନାହିଁ । ପରମାଣୁ ଚିରନ୍ତନ ଓ ଅବିନଶ୍ୱର । ପରମାଣୁକୁ ଧ୍ୱଂସ କରାଯାଇ ନ ପାରେ । ଏହି ପରମାଣୁ ବିଭିନ୍ନ ରୀତିରେ ପରସ୍ପର ସହିତ ସଂଯୁକ୍ତ ହୋଇ ଏହି ବିଶ୍ୱ ସୃଷ୍ଟି କରିଛନ୍ତି । ବିଭିନ୍ନ ପରମାଣୁର ପ୍ରକୃତି ଭିନ୍ନ ଭିନ୍ନ । ଏହି ପରମାଣୁଗୁଡ଼ିକର ବୈଶିଷ୍ଟ୍ୟ ଅନୁଧ୍ୟାନ କରିବାରୁ କଣାଦଙ୍କ ଦର୍ଶନକୁ ବୈଶେଷିକ ଦର୍ଶନ ଆଖ୍ୟା ଦିଆଯାଇଥିଲା ।

କଣାଦଙ୍କ ମତରେ ଏହି ବିଶ୍ୱରେ ଯାହା ଅଛି, ସେଗୁଡ଼ିକ ଦ୍ରବ, ଗୁଣ, କର୍ମ, ସାମାନ୍ୟ, ବୈଶିଷ୍ଟ୍ୟ, ସମବାୟ ଏହି ଛଅଗୋଟି ଗୁଣ ବିଶିଷ୍ଟ । ବସ୍ତୁକୁ ସେ ନଅଗୋଟି ଭାଗରେ ବିଭକ୍ତ କରିଥିଲେ, ଯଥା – କ୍ଷିତି, ଅପ୍, ତେଜ, ମରୁତ, ବ୍ୟୋମ, କାଳ, ଦିଗ, ମନ ଓ ଆତ୍ମା । ଏଥିରୁ ପ୍ରଥମ ଚାରୋଟି ଚାରିପ୍ରକାର ପରମାଣୁ ନେଇ ଗଠିତ । ବ୍ୟୋମ, ସମୟ, ଦିଗ, ଆତ୍ମା ଆଦି ମଣିଷର ସ୍ପର୍ଶ ବାହାରେ । ଏହି ପରମାଣୁର ସଂଯୋଗ ଓ ବିଯୋଗ ଫଳରେ ବସ୍ତୁର ସୃଷ୍ଟି ବା ବିନାଶ ହୁଏ । ବିଭିନ୍ନ ପଦାର୍ଥର ଭିନ୍ନ ଭିନ୍ନ ପ୍ରକୃତି ଅଛି ଓ ଏଗୁଡ଼ିକ ବର୍ଣ୍ଣ, ଗନ୍ଧ, ସ୍ୱାଦ, ସ୍ପର୍ଶ, ଶବ୍ଦ, ସଂଖ୍ୟା ଆଦି ଚବିଶ ଗୋଟି ଗୁଣଦ୍ୱାରା ପରସ୍ପରଠାରୁ ପୃଥକ ।

ପରମାଣୁ କିଭଳି ପରସ୍ପର ସହିତ ସଂଯୁକ୍ତ ହୁଏ କଣାଦ ତାହା ଦର୍ଶାଇଛନ୍ତି । ଗୋଟିଏ ପରମାଣୁ ଅନ୍ୟ ଏକ ପରମାଣୁ ସହିତ ସଂଯୁକ୍ତ ହୋଇ ଦ୍ୱିପରମାଣୁକ ସୃଷ୍ଟି କରନ୍ତି ।

କଣାଦଙ୍କ ଏହି ପରମାଣୁ ତଥ୍ୟ ଗ୍ରୀକ୍ ଦାର୍ଶନିକ ଲିକ୍ୟୁପସ ଓ ଡିମୋକ୍ରିଟସ୍‌ଙ୍କ ତଥ୍ୟ ସହିତ ବେଶ୍ ତୁଳନୀୟ । ଆଧୁନିକ ପରମାଣୁ

ତଥ୍ୟ ଏହା ସହିତ ଏଭଳି ଭାବରେ ମିଳିଯାଉଛି ଯେ ଅଢେଇହଜାର ବର୍ଷତଳେ ପରମାଣୁ ସମ୍ବନ୍ଧରେ ଆମର ବୈଜ୍ଞାନିକମାନେ କିଭଳି ଧାରଣା କରିପାରୁଥିଲେ, ଭାବିଲାବେଳକୁ ବିସ୍ମିତ ହେବା ଛଡ଼ା ଅନ୍ୟ ଉପାୟ ନାହିଁ । ଡିମୋକ୍ରିଟସ୍‌ଙ୍କ ଶହେ ବର୍ଷ ପୂର୍ବରୁ କଣାଦ ପରମାଣୁ ତଥ୍ୟ ପ୍ରଚାର କରିଥିବାରୁ ପରମାଣୁ ତଥ୍ୟ ପାଇଁ କଣାଦଙ୍କୁ ଉପଯୁକ୍ତ ସମ୍ମାନ ବିଶ୍ୱ ଦରବାରରେ ଦିଆଯିବା ଉଚିତ ।

